# ମାର୍କ୍ସବାଦର ବୈପ୍ଳବିକ ବିଚାର କେବଳମାତ୍ର ଇତିହାସ ନୁହେଁ

ଗ୍ରିଗୋରି ଭୋଦୋଲାଜୋଭ

## ଲେଖକଙ୍କ ସମ୍ପର୍କରେ

ଏ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେଉଁ ସମସ୍ତ ସାମାଜିକ ଓ ଅର୍ଥନୈତିକ ବାସ୍ତବତା ଏ ବିଶ୍ୱରେ ରୂପ ନେଇଛି ତାହାର ନିର୍ଯ୍ୟାସ କଣ ? ସାମାଜିକ ଅଗ୍ରଗତି ବିଷୟକ ତତ୍ତ୍ୱଗୁଡ଼ିକର ବିକାଶଧାରା ଉପରେ, ବିଶେଷଭାବେ ମାର୍କସବାଦ ଉପରେ ସେଗୁଡ଼ିକର କି ପ୍ରଭାବ ପଡ଼ିବ ? ସୁପରିଚିତ ସୋଭିଏତ ଦାର୍ଶନିକ ଓ ଲେଖକ **ଗ୍ରିଗୋରୀ ଭୋଦୋଲାଜଭ** (ଜନ୍ମ ୧୯୩୮) ଠିକ୍ ଏଇଭଳି ପ୍ରଶ୍ନମାନ ଉତ୍ଥାପନ କରିଛନ୍ତି। ତାଙ୍କ ଦ୍ୱାରା ଲିଖିତ **"ରେଭୋଲ୍ୟୁସନିସ୍ତିଚେସ୍କିଠାରୁ ପ୍ଲେଖାନଭଙ୍କ ପର୍ଯ୍ୟନ୍ତ"** (ରୁଷରେ ସାମାଜିକ ଭାବନାର ବିକାଶ ଧାରାରେ ବିଶେଷ ଲକ୍ଷଣ), **"ଦ୍ୱନ୍ଦ୍ୱବାଦ ଓ ବିପ୍ଳବ", "ଶ୍ରେଣୀମୈତ୍ରୀର କୌଶଳ"** ପୁସ୍ତକାବଳୀ ତଥା ସେ ରଚନା କରିଥିବା ଅସଂଖ୍ୟ ଲେଖା ଓ ପ୍ରବନ୍ଧାବଳୀ, ବିଦ୍ୱାନମଣ୍ଡଳୀ ଓ ସାଧାରଣ ପାଠକ ଉଭୟଙ୍କ ଦ୍ୱାରା ଆଦୃତ ହୋଇଛି । ତାତ୍ତ୍ୱିକ ସମସ୍ୟାବଳୀ, ସାମ୍ପ୍ରଦାୟିକସୁଲଭ ଲିଖନ ଶୈଳୀ, ଉପସ୍ଥାପନର ଯୁକ୍ତିଯୁକ୍ତ ଭଙ୍ଗୀ, ତଥା ସୁସ୍ପଷ୍ଟ ଭାଷାର ପ୍ରୟୋଗ କ୍ଷେତ୍ରରେ ସେ ଯେଉଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଗ୍ରହଣ କରିଛନ୍ତି ତାହା ଫଳରେ ତାଙ୍କ ରଚନାବଳୀ ସମାଜବିକାଶର ସର୍ବାଧୁନିକ ବିଚାରଧାରାରେ ଆଗ୍ରହୀ ପାଠକମାନଙ୍କ ମଧ୍ୟରେ ଲୋକପ୍ରିୟ ହୋଇଛି ।

ଗ୍ରିଗୋରୀ ଭୋଦୋଲ୍‌କୋଭ

# ମାର୍କସବାଦର ବୈପ୍ଳବିକ ସତ୍ତ୍ବର
# କେବଳମାତ୍ର ଇତିହାସ ନୁହେଁ

('କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର' ପ୍ରକାଶନର ୧୪୦ତମ ବାର୍ଷିକୀ ଉପଲକ୍ଷେ)



ସୋଭିଏତ୍ ଦେଶ
ପୁସ୍ତିକା
1988

Marxism's Revolutionary Ideas

Are Not Just History

by : Grigori Vodolazov

(Oriya)

ସୋଭିଏତ ୟୁନିଅନର କଲିକତାସ୍ଥିତ ଦୂତାଳୟର ବାର୍ତ୍ତା ବିଭାଗ ତରଫରୁ ଏସ୍. ଏସ୍. ଆସ୍ତ୍ରାଫିଏଭଙ୍କ କର୍ତ୍ତୃକ ୧୮, ପ୍ରମଥେଶ ବଡ଼ୁଆ ସରଣୀ, କଲିକତା-୧୯ରୁ ପ୍ରକାଶିତ ଏବଂ ତାଙ୍କ ଦ୍ୱାରା ଶାଶ୍ୱତ ମୁଦ୍ରଣୀ, ୧/୪, ପ୍ରେମଚାନ୍ଦ ବରାଲ ଷ୍ଟ୍ରୀଟ, କଲିକତା-୧୨ରେ ମୁଦ୍ରିତ।

"ଏଇ କ୍ଷୁଦ୍ର ପୁସ୍ତିକାଟିର ମୂଲ୍ୟ ବୃହତ୍ ବୃହତ୍ ଗ୍ରନ୍ଥ ସହିତ ସମାନ : ଏହାର ଜୀବନୀଶକ୍ତି ଆଜି ମଧ୍ୟ ସମଗ୍ର ସଭ୍ୟ ଜଗତର ସବୁ ସଙ୍ଗଠିତ ତଥା ସଂଗ୍ରାମୀ ସର୍ବହରାଙ୍କୁ ଅନୁପ୍ରାଣିତ କରୁଛି, ପଥ ପ୍ରଦର୍ଶନ କରୁଛି ।"

# ସୂଚୀ

# ଭୂମିକା

"ସମୟ ଆସିଯାଇଛି ଯେତେବେଳେ କି କମ୍ୟୁନିଷ୍ଟମାନେ, ଖୋଲାଖୋଲିଭାବେ, ସାରା ଦୁନିଆ ଆଗରେ ସେମାନଙ୍କ ମତାମତ, ସେମାନଙ୍କ ଲକ୍ଷ୍ୟ, ସେମାନଙ୍କ ବିଗ୍ଭରଧାରା ପ୍ରକାଶ କରିବେ, ଏବଂ ଖୋଦ୍ ପାର୍ଟିର ଏକ ଇସ୍ତାହାର ବାହାର କରିଦେଇ, କମ୍ୟୁନିଜମର ଭୂତ ସମ୍ବନ୍ଧରେ ପିଲାଳିଆ ଗପର ମୁକାବିଲା କରିବେ ।"

**କାର୍ଲ ମାର୍କସ୍ ଓ ଫେଡରିକ ଏଙ୍ଗେଲ୍ସ୍**

୧୪୦ ବର୍ଷ ପୂର୍ବେ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରାରମ୍ଭିକ କାଳରେ, **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର** ଦୃଢ଼ତାର ସହିତ ଓ ଉଦାତ୍ତ ସ୍ୱରରେ ଘୋଷଣା କରିଥିଲା : "କମ୍ୟୁନିଷ୍ଟମାନେ ସେମାନଙ୍କ ମତାମତ ଓ ଲକ୍ଷ୍ୟଗୁଡ଼ିକୁ ଗୋପନ ରଖିବାକୁ ଘୃଣା କରନ୍ତି । ସେମାନେ ଖୋଲାଖୋଲିଭାବେ ଜଣାଇ ଦିଅନ୍ତି ଯେ ପ୍ରଚଳିତ ସମସ୍ତ ପ୍ରକାର ସାମାଜିକ ଅବସ୍ଥାକୁ ଜୋର ଜବରଦସ୍ତ ବିନାଶ କରିବା ଦ୍ୱାରା ହିଁ ସେମାନଙ୍କର ଲକ୍ଷ୍ୟ ହାସଲ ହୋଇ ପାରିବ ।"(୧)

ଯେଉଁମାନେ କମ୍ୟୁନିଷ୍ଟମାନଙ୍କୁ ବୁଝିବାକୁ ଚାହାନ୍ତି, ସେମାନଙ୍କ ସଂଗ୍ରାମର ଲକ୍ଷ୍ୟ ଓ କର୍ତ୍ତବ୍ୟ ସମ୍ପର୍କରେ ଜାଣିବାକୁ ଚାହାନ୍ତି, ଆଉ ଆଧୁନିକ ଦୁନିଆର ଏଇ ଆଠକୋଟିରୁ ଅଧିକ ସଂଖ୍ୟକ ଲୋକଙ୍କ କ୍ରିୟାକଳାପର ସୁଗଭୀର ଉଦ୍ଦେଶ୍ୟ ବୁଝିବା ପାଇଁ ଆଗ୍ରହୀ ଅଛନ୍ତି, ସେମାନେ କାର୍ଲ ମାର୍କସ୍ ଓ ଫ୍ରେଡରିକ ଏଙ୍ଗେଲସ୍ଙ୍କ ଦ୍ୱାରା ରଚିତ "**କମ୍ୟୁନିଷ୍ଟ**

(୧) କାର୍ଲ ମାର୍କସ୍, ଫ୍ରେଡରିକ ଏଙ୍ଗେଲସ : **ସଂଗୃହୀତ ରଚନାବଳୀ** ଖଣ୍ଡ-୬, ପୃଷ୍ଠା ୫୧୯ ।

**ପାର୍ଟିର ଇସ୍ତାହାର"** ନିଶ୍ଚିତଭାବେ ପଢ଼ିବା ଆବଶ୍ୟକ । ଫ୍ରେଡରିକ ଏଙ୍ଗେଲସଙ୍କ ଦେହାବସାନ ଉପଲକ୍ଷେ **"ଫ୍ରେଡରିକ ଏଙ୍ଗେଲସ"** ନାମକ ଏକ ପ୍ରବନ୍ଧରେ ଲେନିନ ୧୮୯୫ ମସିହାରେ ଏଇ **"ଇସ୍ତାହାର"** ସମ୍ପର୍କରେ ଲେଖିଥିଲେ : "ଏଇ କ୍ଷୁଦ୍ର ପୁସ୍ତିକାଟିର ମୂଲ୍ୟ ବଡ଼ ବଡ଼ ଗ୍ରନ୍ଥ ସହିତ ସମାନ : ଏହାର ଜୀବନୀଶକ୍ତି ଆଜି ମଧ୍ୟ ସମଗ୍ର ସଭ୍ୟ ଜଗତର ସବୁ ସଙ୍ଗଠିତ ତଥା ସଂଗ୍ରାମୀ ସର୍ବହରାଙ୍କୁ ଅନୁପ୍ରାଣିତ କରୁଛି, ପଥ ପ୍ରଦର୍ଶନ କରୁଛି ।"(୧) ଆଜି ମଧ୍ୟ, ୯୦ ବର୍ଷ ପରେ ଲେନିନଙ୍କ ଉକ୍ତ ପୂର୍ବଭଳି ପ୍ରାସଙ୍ଗିକ ହୋଇରହିଛି । ଆଉ ଏହା ଯଥାର୍ଥ । "ଏକ ପ୍ରତିଭାଧର ବ୍ୟକ୍ତିର ପ୍ରାଞ୍ଜଳତା ଓ ଅସାଧାରଣ ବୁଦ୍ଧିମତ୍ତାର ଛାପ ବହନ କରିଥିବା ଏଇ ଗ୍ରନ୍ଥରେ ଏକ ନୂତନ ବିଶ୍ୱ ସଂକ୍ରାନ୍ତ ଧାରଣାର ରେଖାଚିତ୍ର ପ୍ରଦତ୍ତ ହୋଇଛି, ସୁସମ୍ପନ୍ନ ବସ୍ତୁବାଦ, ସମାଜ ଜୀବନର କ୍ଷେତ୍ର ଯାହାର ଅନ୍ତର୍ଭୂତ, ତାହା ମଧ୍ୟ ରହିଛି । ଏଥିରେ ରହିଛି ବିକାଶର ସର୍ବାଧିକ ବ୍ୟାପକ ଓ ଗମ୍ଭୀର ତତ୍ତ୍ୱ—ଡାଏଲେକ୍‌ଟିକ୍‌ସ । ଆହୁରି ମଧ୍ୟ ରହିଛି ଶ୍ରେଣୀ ସଂଗ୍ରାମରେ ଏବଂ ବିଶ୍ୱ ଐତିହାସିକ ବୈପ୍ଳବିକ ପ୍ରକ୍ରିୟାରେ ସର୍ବହରାର—ଏକ ନୂତନ, କମ୍ୟୁନିଷ୍ଟ ସମାଜର ସ୍ରଷ୍ଟା ସର୍ବହରାର ଭୂମିକା ସମ୍ପର୍କିତ ତତ୍ତ୍ୱ ।"(୨)

ଅବଶ୍ୟ, ଏହା ପରେ ଅନେକ ଜଳ ସେତୁ ତଳେ ପ୍ରବାହିତ ହୋଇ ଯାଇଛି, ମାନବଜାତିର ଜୀବନରେ ବିରାଟ ପରିବର୍ତ୍ତନମାନ ସଂଘଟିତ ହୋଇଛି : ପ୍ରତିଦ୍ୱନ୍ଦ୍ୱିତାମୂଳକ ପୁଞ୍ଜିବାଦ ରୂପାନ୍ତରିତ ହୋଇ ଏକଚାଟିଆ ପୁଞ୍ଜିବାଦ ହୋଇଛି (ଯାହା ପରେ ହୋଇଛି ରାଷ୍ଟ୍ରୀୟ - ମନୋପୋଲି ଏବଂ ଟ୍ରାନ୍‌ସ ମନୋପୋଲି) ; ଏକ ସମାଜବାଦୀ ପ୍ରଣାଳୀ ଆତ୍ମ-ପ୍ରକାଶ କରିଛି ; ଜାତୀୟ ମୁକ୍ତି ଆନ୍ଦୋଳନ ତୃତୀୟ ବିଶ୍ୱର ଚରିତ୍ରକୁ ମୌଳିକଭାବେ ବଦଳେଇ ଦେଇଛି ; ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀର ରୂପରେଖ ବଦଳିଯାଇଛି, ଆଉ ତାର କ୍ରିୟାକଳାପ ଓ ସଂଗ୍ରାମର ପରିବେଶ ବି ବଦଳିଛି । ସହଜରେ ଏହା ହୃଦବୋଧ ହେବ ଯେ **"କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର"** ପରଠାରୁ ବୈପ୍ଳବିକ ତତ୍ତ୍ୱର ଅଶେଷ ଅଗ୍ରଗତି ସାଧିତ ହୋଇଛି । ଏହା ପରେ ପରେ ଆସିଛି କାର୍ଲ ମାର୍କସଙ୍କର **କାପିଟାଲ, କ୍ରିଟିକ ଅଫ ଦି ଗୋଥା ପ୍ରୋଗ୍ରାମ** ଏବଂ **ଫ୍ରାନ୍‌ସରେ ସିଭିଲ ଓ୍ୱାର,** ଫ୍ରେଡରିକ ଏଙ୍ଗେଲସଙ୍କର **ଆଣ୍ଟି-ଡୁହରିଙ୍ଗ,** ଭ୍ଲାଦିମିର ଲେନିନଙ୍କର **ସାମ୍ରାଜ୍ୟବାଦ**

(୧) କାର୍ଲମାର୍କସ, ଫ୍ରେଡରିକ ଏଙ୍ଗେଲସ : **ସଂଗୃହୀତ ରଚନାବଳୀ** ଖଣ୍ଡ-୨, ପୃଷ୍ଠା ୨୪ ।

(୨) ଭି. ଆଇ. ଲେନିନ—**ସଂଗୃହୀତ ରଚନାବଳୀ**—ଖଣ୍ଡ ୨୧, ପୃଷ୍ଠା-୪୮ ।

**ପୁଞ୍ଜିବାଦର ସର୍ବୋଚ୍ଚସ୍ତର, ରାଷ୍ଟ୍ର ଓ ବିପ୍ଳବ** ଏବଂ **ଆମ ବିପ୍ଳବ**। ପୁଣି ଆସିଛି ଆନ୍ତୋନିଓ ଗ୍ରାମସି, ଜର୍ଜି ଦିମିତ୍ରଭ, ମରିସ ଥୋରେ, ପାଲମିରୋ ତୋଗଲିଆଟି, ହୋ ଚି ମିନ୍, ଫିଡେଲ କାଷ୍ଟ୍ରୋ ତଥା ଅନ୍ୟାନ୍ୟ ବରିଷ୍ଠ କମ୍ୟୁନିଷ୍ଟମାନଙ୍କର ରଚନାବଳୀ। ତାହା ସଙ୍ଗେ ସଙ୍ଗେ ରହିଛି କମ୍ୟୁନିଷ୍ଟ ପାର୍ଟିମାନଙ୍କର କଂଗ୍ରେସସବୁର ପ୍ରସ୍ତାବାବଳୀ, ବିଶ୍ୱ କମ୍ୟୁନିଷ୍ଟ ସମ୍ମିଳନୀମାନଙ୍କର ଦଲିଲସମୂହ। ଏହା ବାଦ୍ ରହିଛି ଶ୍ରମଜୀବୀ ଜନତାର ବହୁ ଦଶନ୍ଧିବ୍ୟାପୀ ସଂଗ୍ରାମ ଯାହା ତତ୍ତ୍ୱକୁ ବୈପ୍ଳବିକ ଅନୁଭୂତି ଦ୍ୱାରା ପରିପୁଷ୍ଟ କରିଛି।

ହେଲେ **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର** ହେଉଛି ଏହାର ଚେର, ମୂଳ ଉତ୍ସ, ଏବଂ କମ୍ୟୁନିଷ୍ଟ ଶିକ୍ଷାର ମୌଳିକ ଭିତ୍ତି। ଏହା ବିନା କମ୍ୟୁନିଷ୍ଟମାନଙ୍କ ସଂଗ୍ରାମର ଇତିହାସକୁ, ତାର ସମସାମୟିକ ନିର୍ଯ୍ୟାସକୁ ଓ ସମ୍ଭାବନାକୁ ବୁଝିବା ଯେ କେବଳ କଷ୍ଟକର ତାହା ନୁହେଁ, ସମ୍ଭବତଃ ଅସମ୍ଭବ ମଧ୍ୟ। ଏଥି ପ୍ରତି ଗୁରୁତ୍ୱ ଦେବା ଏଇଥି ପାଇଁ ଅଧିକ ଜରୁରୀ ହୋଇଛି ଯେ ମାର୍କସବାଦର ଆଦର୍ଶଗତ ବିରୋଧୀମାନେ ଆଜି ମାର୍କସ ଓ ଏଙ୍ଗେଲସ୍ଙ୍କ ରଚନାବଳୀକୁ, ବିଶେଷଭାବେ **ଇସ୍ତାହାର**କୁ, "ନିରୁତା ଇତିହାସ" ବୋଲି ବ୍ୟାଖ୍ୟା କରି ଉଡ଼େଇ ଦେଉଛନ୍ତି। ସେମାନଙ୍କ ବିଚାରରେ ଏହା ଏପରି ଏକ ଇତିହାସ ଯାହା ହୁଏତ କୌତୁହଳଜନକ, ମାତ୍ର ଯାହା ଆଧୁନିକ ବିଶ୍ୱ ସହିତ ବହୁ କାଳରୁ ସମ୍ପର୍କ ହରାଇ ଦେଇଛି। ଉଦାହରଣସ୍ୱରୂପ ଆମେରିକୀୟ ପ୍ରଫେସର ଜିଗନିଉ ବ୍ରଜେଜିନ୍ସ୍କୀ ଦୃଢ଼ଭାବରେ କହୁଛନ୍ତି ଯେ ମାର୍କସବାଦ ବିଂଶ ଶତାବ୍ଦୀର ବିଶ୍ୱ ବିକାଶର ସମସ୍ୟାବଳୀ ସମାଧାନରେ ଅସମର୍ଥ ସାବ୍ୟସ୍ତ ହୋଇଛି। ଅନ୍ୟତମ କମ୍ୟୁନିଷ୍ଟ-ବିରୋଧୀ ପ୍ରଖ୍ୟାତ ଫରାସୀ ସମାଜବିଜ୍ଞାନୀ ରେମଣ୍ଡ ଆରନ ଅନୁରୂପ ଦୃଢ଼ତାସହିତ ଅଭିଯୋଗ କରନ୍ତି ଯେ ମାର୍କସ ଯେଉଁ ବିପ୍ଳବ କଥା କହିଥିଲେ ଆମେ ତାହାକୁ ପଛରେ ପକେଇ ଦେଲୁଣି। ମାର୍କସବାଦ "ଆମ ପଛରେ ପଡ଼ିଯାଇଛି" ବୋଲି ମାର୍କସବାଦ-ବିରୋଧୀମାନଙ୍କ ଅଭିଯୋଗର କାରଣ ଏଇ ଯେ ସେମାନଙ୍କ ମତରେ, **ଇସ୍ତାହାରର** ଭବିଷ୍ୟତବାଣୀର ବିପରୀତ ପରିସ୍ଥିତି ସୃଷ୍ଟି ହୋଇଛି। ସମସାମୟିକ ପାଶ୍ଚାତ୍ୟ ସମାଜ ବହୁକାଳରୁ ବେଶ ନମନୀୟ ଓ ପ୍ରାଣବନ୍ତ ସମାଜରେ ରୂପାନ୍ତରିତ ହୋଇଯାଇଛି। ଏହା ସମ୍ମୁଖୀନ ହେଉଥିବା ସମସ୍ୟାମାନଙ୍କର ସମାଧାନ ଏପରିଭାବେ କରିବାର ସାମର୍ଥ୍ୟ ଏହାର ରହିଛି, ଯାହା ଫଳରେ ବୈପ୍ଳବିକ ଅଭ୍ୟୁତ୍ଥାନର **ସମ୍ଭାବନାକୁ ସଫଳତା** ପୂର୍ବକ ଏଡ଼େଇ ଦେଇହେବ। ପୁଣି ପୁଞ୍ଜିବାଦୀ ବ୍ୟକ୍ତିଗତ **ମାଲିକାନା, ଯାହାର** ବିଲୋପକୁ ସମାଜବାଦୀ ବିପ୍ଳବର ଅନ୍ୟତମ ପ୍ରଧାନ କର୍ତ୍ତବ୍ୟ ବୋଲି ମାର୍କସ ଓ ଏଙ୍ଗେଲସ

ବିଗ୍ଭର କରୁଥିଲେ ତାହା, ସଂସ୍କାର ସାଧନ ମାଧ୍ୟମରେ ଆପଣା ଛୁଏଁ, ନୀରବରେ ଉବେଇ ଯାଉଛି । ମାର୍କସବାଦ ପଛରେ ପଡ଼ିଯିବାର ଅନ୍ୟ ଏକ କାରଣ ଏହା ହୋଇଛି ଯେ ବିପ୍ଳବର **ଲକ୍ଷ୍ୟ** ଆଉ ବୈପ୍ଳବିକ କମ୍ୟୁନିଷ୍ଟ ଆନ୍ଦୋଳନର **ସାମାଜିକ ଭିତ୍ତିଭୂମି** ପୁରୁଣାକାଳିଆ ହୋଇଯାଉଛି, ଯେହେତୁ ବୈଜ୍ଞାନିକ ଓ ପ୍ରଯୁକ୍ତିବିଦ୍ୟାଗତ ଅଗ୍ରଗତିର ପରିଣାମରେ ଶ୍ରମିକ ଶ୍ରେଣୀର ସଂଖ୍ୟାଗତ ଶକ୍ତି ଦ୍ରୁତ ହ୍ରାସ ପାଉଛି ଏବଂ ଶ୍ରମିକ ଶ୍ରେଣୀର ସ୍ଥାନକୁ କୁଆଡ଼େ ଖୁବ ଶୀଘ୍ର ଆଧୁନିକ ସାମାଜିକ ସଂଗ୍ରାମର ଏକ ନୂତନ ନେତା—ବୁଦ୍ଧିଜୀବୀ ଶ୍ରେଣୀ—ଗ୍ରହଣ କରିବାକୁ ଯାଉଛି । (ଅଧିକନ୍ତୁ, ମାର୍କସବାଦର ବିରୋଧୀମାନଙ୍କ ବିଗ୍ଭରନୁସାରେ ଶ୍ରମିକ ଶ୍ରେଣୀର ଉନ୍ନତତର ଭୌତିକ ସ୍ଥିତି ଫଳରେ ସେମାନଙ୍କର ବୈପ୍ଳବିକ ମନୋଭାବ କୁଆଡ଼େ ହ୍ରାସ ପାଇଛି ଓ ସଂସ୍କାରବାଦୀ ପ୍ରବୃତ୍ତି ବୃଦ୍ଧି ପାଇଛି, ଯେହେତୁ ଆଜିର ଶ୍ରମିକ ପ୍ରକୃତ ପକ୍ଷେ ନିଜର "ବନ୍ଧନ ବ୍ୟତୀତ ଆଉ କିଛି ମଧ୍ୟ ହରାଇବାକୁ ଯାଉଛି") । ପରିଶେଷରେ ସମାଲୋଚକମାନେ କହନ୍ତି ଯେ, ମଣିଷଜାତିର ଅସ୍ତିତ୍ୱ ନିମନ୍ତେ ଗ୍ଭଲିଥିବା ସଂଗ୍ରାମର କର୍ତ୍ତବ୍ୟସମୂହ, ଯାହାକୁ କମ୍ୟୁନିଷ୍ଟମାନେ ସର୍ବ ପ୍ରଥମ କାମ ବୋଲି ବିଗ୍ଭର କରନ୍ତି, ତାହା ବୈପ୍ଳବିକ ରୂପାନ୍ତର ନିମନ୍ତେ ସଂଗ୍ରାମର କାର୍ଯ୍ୟକ୍ରମକୁ ଗୌଣ କରିଦେବ ଏବଂ ଶେଷରେ ଯାଇଁ ତାହାକୁ ପୂରା ନଷ୍ଟଭ୍ରଷ୍ଟ କରିବ ।

ବାସ୍ତବପକ୍ଷେ, ଇସ୍ତାହାରର ବିଗ୍ଭରଧାରାକୁ ସଂପୂର୍ଣ୍ଣଭାବେ ଏକ ଇତିହାସର ବସ୍ତୁ କରି ଦେବା ଲାଗି ମାର୍କସବାଦର ବିରୋଧୀମାନେ ବିଶେଷ ଆଗ୍ରହୀ । ହେଲେ, ସାମାଜିକ ଆଚରଣରୁ ଏହା ପ୍ରତିପାଦିତ ହେଉଛି ଯେ ମାର୍କସ ଓ ଏଙ୍ଗେଲସ ଆମର ସୁଦୂର ଅତୀତର ପୂର୍ବ ସୂରୀ ନୁହନ୍ତି, ସେମାନେ ଆମର ସମସାମୟିକ । ସେଇ ଆଚରଣରୁ ଏହା ମଧ୍ୟ ପ୍ରମାଣିତ ହେଉଛି ଯେ ଦୃଷ୍ଟିକୋଣ ସଂକ୍ରାନ୍ତ ପ୍ରଚଳିତ ବିଧାନର ବିରୁଦ୍ଧରେ ଆମେ ମାର୍କସ ଓ ଏଙ୍ଗେଲସଙ୍କଠାରୁ ସମୟ ବିଗ୍ଭରରେ ଯେତେ ଦୂରକୁ ଯାଉଛୁ ତାଙ୍କ ସିଦ୍ଧାନ୍ତର ଆମେ ସେତିକି ନିକଟତର ହେଉଛୁ, ତାଙ୍କ ବିଗ୍ଭର ଓ ନିଷ୍କର୍ଷର ଆକାର ସେତିକି ଅଧିକ ଉତ୍କର୍ଷ ଓ ବିଶାଳ ପ୍ରତିପନ୍ନ ହେଉଛି, ଏଇ ସୁମହାନ ଐତିହାସିକ ପୁରୁଷ ପୁଙ୍ଗବମାନଙ୍କର ମହତ୍ତ୍ୱ ସେତିକି ସୁସ୍ପଷ୍ଟ ହେଉଛି ।

**ଇସ୍ତାହାର**ରେ ପ୍ରଦତ୍ତ ବିଗ୍ଭରଗୁଡ଼ିକର ଚିରନ୍ତନ ଶକ୍ତି ରହିଛି କେଉଁଠି ? ସମଗ୍ର ବିଶ୍ୱର ଶ୍ରମଜୀବୀ ଜନସାଧାରଣଙ୍କ ନିମନ୍ତେ ଆଜି ମଧ୍ୟ ଏହା ସର୍ବଶ୍ରେଷ୍ଠ ଦିଗ୍‌ଦର୍ଶନ ହୋଇଛି କାହିଁକି, ଏବଂ ଯେଉଁ ବିପ୍ଳବ ବିଷୟ **ଇସ୍ତାହାର**ର ଲେଖକମାନେ କହନ୍ତି ତାହା ଆଜି ମଧ୍ୟ କେଉଁ କାରଣରୁ ଏକ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ହୋଇ ରହିଛି ?

ଏହାର ଉତ୍ତର ହେଲା ଏଇ ଯେ ସମାଜ ଜୀବନକୁ ଗଭୀରଭାବେ ଅନୁଧ୍ୟାନ କରିବାର ଏକ ନୂତନ ପଦ୍ଧତି **ଇସ୍ତାହାର** ବାହାର କରିଥିଲା ଓ ସାବ୍ୟସ୍ତ କରିଥିଲା । ତାହା ହେଲା **ଐତିହାସିକ ବସ୍ତୁବାଦର ପଦ୍ଧତି** । ଏଇ ପଦ୍ଧତି ଉପରେ **ନିର୍ଭର** କରି ମାର୍କସବାଦୀ ଶିକ୍ଷା(୧) ଏକ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥାଭାବେ ପୁଞ୍ଜିବାଦର ପରସ୍ପର ବିରୋଧିତାକୁ ପ୍ରକାଶ କରିଥିଲା ; (୨) ଯେଉଁ ସାମାଜିକ ଶକ୍ତିମାନେ ପୁରାତନ ସମାଜ ସମ୍ପର୍କକୁ ଧ୍ୱଂସ କରିବେ ଓ ନୂତନ ସମ୍ପର୍କମାନ ସୃଷ୍ଟି କରିବେ ତାହାର **ସଙ୍ଗ** ନିରୂପଣ କରିଥିଲା ; (୩) ବୈପ୍ଳବିକ ସଂଗ୍ରାମର ପ୍ରଧାନ ପ୍ରଧାନ ଗତିଧାରା, ରୂପରାଶି ଓ ପଦ୍ଧତିଗୁଡ଼ିକୁ ସାବ୍ୟସ୍ତ କରିଥିଲା ।

ଏ ପୁସ୍ତକର ପରବର୍ତ୍ତୀ ଅଧ୍ୟାୟଗୁଡ଼ିକରେ ପାଠକମାନଙ୍କୁ **ଇସ୍ତାହାର**ର ବିଷୟ ସମ୍ପର୍କରେ ଅବଗତ କରାଇ ଦିଆଯିବ ତଥା ଆଧୁନିକ ବୈପ୍ଳବିକ ପ୍ରକ୍ରିୟାର ତତ୍ତ୍ୱ ଓ ପ୍ରୟୋଗ ପାଇଁ ଏହାର ତାତ୍ପର୍ଯ୍ୟ ବର୍ଣ୍ଣନା କରାଯିବ ।

# ଉଭୟ ରଚୟିତା ଓ ଅଭିନେତା
## (ଐତିହାସିକ ବସ୍ତୁବାଦର ପଦ୍ଧତି ସମ୍ପର୍କରେ)

**ଅଗ୍ରଦୂତ ।** —ଏକ ଆକସ୍ମିକ ସ୍ୱତଃସ୍ଫୂର୍ତ୍ତି ପ୍ରତିବାଦ—ଯାହା ହେଉଛି ସାମାଜିକ ଅନ୍ୟାୟ ପ୍ରତି ସ୍ୱାଭାବିକ ପ୍ରଥମ ପ୍ରତିକ୍ରିୟା—ଯେପରି ବିଶେଷଭାବରେ ବୃଦ୍ଧି ପାଇ ଏକ କ୍ରମାଗତ ଓ ଚେତନଶୀଳ ସଂଗ୍ରାମର ରୂପ ଧାରଣ କରିବ ତାହା ସମ୍ଭବ କରିବା ନିମନ୍ତେ ସାମାଜିକ ଅନ୍ୟାୟର ଓ ତା'ର କାରଣମାନଙ୍କର ଚରିତ୍ର ସମ୍ବନ୍ଧରେ ଏକ ସଠିକ ବିଶ୍ଳେଷଣ କରିବା ସର୍ବାଦୌ ଆବଶ୍ୟକ । ସାମାଜିକ ପରସ୍ପର ବିରୋଧିତାର ମଞ୍ଜି କେଉଁଠି ରହିଛି ତାହା ବୁଝିବା ଏବଂ ତାର ମୌଳିକ କାରଣ କିଣ ତାହା ଜାଣିବାଠାରୁ ତାର ପରିଣତି ଜାଣିବା ପର୍ଯ୍ୟନ୍ତ କିପରିଭାବରେ ଯାତ୍ରା କରିବାକୁ ହେବ ତାହା ବୁଝିବା ଏକାନ୍ତ ଜରୁରୀ । ଅନ୍ୟ କଥାରେ ସାମାଜିକ ବିକାଶର ରୂପରେଖ ଜାଣିବାକୁ ହେବ, ଆଉ ସେଇ ରୂପରେଖକୁ ଅନୁଶୀଳନ କରିବାର ପଦ୍ଧତି ଆୟତ୍ତ କରିବାକୁ ହେବ ।

ମାନବଜାତିର ସର୍ବଶ୍ରେଷ୍ଠ ପ୍ରତିନିଧିବୃନ୍ଦ—ବିଶିଷ୍ଟ ଦାର୍ଶନିକ, ରାଜନୀତିଜ୍ଞ ଓ ବିପ୍ଳବୀ—ଶହ ଶହ ବର୍ଷ କାଳ ଏଇ ପ୍ରସଙ୍ଗ ନେଇ ନିଜ ମଥା ପିଟିଥିଲେ । ଅତ୍ୟନ୍ତ ଉଲ୍ଲେଖନୀୟ ଅଗ୍ରଗତି ସାଧନ କରିଥିଲେ ମାର୍କସ ଓ ଏଙ୍ଗେଲସଙ୍କର ନିକଟତମ ପୂର୍ବଜମାନେ—**ଫରାସୀ ଦାର୍ଶନିକ ଓ ପ୍ରାଜ୍ଞବୃନ୍ଦ** ତଥା ସେମାନଙ୍କ ଶିଷ୍ୟଗଣ, **ଅଷ୍ଟାଦଶ ଶତାବ୍ଦୀର ଫରାସୀ ବୁର୍ଜୁଆ ବିପ୍ଳବର ନେତୃବୃନ୍ଦ,** ଏବଂ ମହାନ **କାଳ୍ପନିକ ସମାଜବାଦୀ** କ୍ଲାଡ ହେନରି ସେଣ୍ଟ-ସାଇମନ (୧୭୬୦-୧୮୨୫), ଫ୍ରାନକୁଇସ ମାରି ଚାର୍ଲସ ଫୋରିଅର (୧୭୭୨-୧୮୩୭) ଓ ରବର୍ଟ ଓଏନ (୧୭୭୧-୧୮୫୮) । **ଇତିହାସର** ରଚୟିତାମାନେ ପରବର୍ତ୍ତୀକାଳରେ ସମାଜ ବିଜ୍ଞାନ କ୍ଷେତ୍ରରେ ଯେଉଁ ତାତ୍ତ୍ୱିକ ଲକ୍ଷ୍ୟ ପ୍ରଦାନ କରିଥିଲେ ତାହାର ଭିତ୍ତିଭୂମି ଏଇମାନେ ହିଁ ପ୍ରସ୍ତୁତ କରିଥିଲେ । ଏ ଲକ୍ଷ୍ୟ ସମ୍ଭବ କରିବା ନିମନ୍ତେ ସେମାନେ ଯାହା କରିଥିଲେ ସେସବୁ କିଣ ?

କ୍ଳାଡ ଆଡ୍ରିଏନ ହେଲଭେଟିଅସ ( ୧୭୧୫—୧୭୭୧ )ଙ୍କ ଦ୍ୱାରା **ଡି ଲହୋମ** ପୁସ୍ତକ ରଚିତ ହୋଇଥିଲା ଅଷ୍ଟାଦଶ ଶତାବ୍ଦୀର ପ୍ରଜ୍ଞାଦୀପ୍ତ—(ଏନ୍ ଲାଇଟେନମେଣ୍ଟ) – ଯୁଗ ଯେତେବେଳେ ଶିଖର ସ୍ଥାନରେ ପହଞ୍ଚି ଥିଲା ସେଇ କାଳରେ । ଏ ସମୟର ବିଶ୍ୱରାଧାରାର ଏକ ଚରମତମ ସାମଞ୍ଜସ୍ୟପୂର୍ଣ୍ଣ ପରିପ୍ରକାଶ ଏଥିରେ ମିଳେ । ଠିକୋଟି କାରଣ ଯୋଗୁଁ ହେଲଭେଟିଅସଙ୍କ ପୁସ୍ତକ, ଏନଲାଇଟେନରମାନଙ୍କ—ପ୍ରାଜ୍ଞ-ମାନଙ୍କର ରଚନାବଳୀ ଭିତରେ ଅତି ସମ୍ମାନଜନକ ସ୍ଥାନ ଲାଭ କରିଥିଲା । ସେ ରଚନାବଳୀ ମଧ୍ୟରେ ସାହିତ୍ୟିକ ଭାବଧାରାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଅନେକ ବିଷୟରେ ରହିଛି । ହେଲଭେଟିଅସଙ୍କ ପୁସ୍ତକର ପ୍ରସିଦ୍ଧିଲାଭର କାରଣଗୁଡ଼ିକ ହେଲା ଲେଖକଙ୍କ ଦୃଢ଼ ଓ ଅବିଚଳିତ ବସ୍ତୁବାଦ, ତାଙ୍କର ସଂଗ୍ରାମୀ ଓ ସାଲିସବିହୀନ ନାସ୍ତିକତା. ଏବଂ ଏ ଘଟଣା ଯେ ସେନସର ହେଉଥିବା କୌଣସି ପ୍ରକାଶନ ସଂସ୍ଥା ନିମନ୍ତେ ପୁସ୍ତକଟି ରଚିତ ହୋଇ ନଥିଲା । ଲେଖକ ଗୋପନରେ ଏହାର ପ୍ରକାଶନ ପାଇଁ ମନସ୍ଥ କରିଥିଲେ, ରାତିରେ ଲେଖୁଥିଲେ, ସାମନା ପାହାଚରେ ରାଜାଙ୍କ ଆଜ୍ଞାବହ ପୁଲିସର ପାଦ ଶବ୍ଦ ବରାବର କାନେଇ ଶୁଣୁଥିଲେ । ତରୁଣ ସୁଲଭ ଅକୃତ୍ରିମ ଆବେଗ ଓ ଖୋଲାମନ ନେଇ ସେ ଏହା ଲେଖିଥିଲେ । ଦ୍ୱିଧାହୀନ ଭାବରେ ଲେଖିଗଲେ ଏବଂ ଏପରି ଶବ୍ଦ ଖୋଜିବା ଉଦ୍ୟମ କଲେ ନାହିଁ, ଯାହା ପୁଲିସ ଓ ସେନସରକୁ ଫାଙ୍କିଦେବା କାର୍ଯ୍ୟରେ ପରେ ତାଙ୍କୁ ସାହାଯ୍ୟ କରିଥାନ୍ତା । ସେ କହୁଥିଲେ, "ଫରାସୀ ଲୋକେ ଅକପଟ ସତ୍ୟ ଚାହାନ୍ତି" । ଏଇ ସତ୍ୟ ହିଁ କେବଳ ଅନ୍ଧକାର ଓ ଅଜ୍ଞତାରେ ଆଚ୍ଛନ୍ନ କୁଜ୍ଝଟିକାକୁ ଛିନ୍ନ କରିପାରିଥିଲା ସୂର୍ଯ୍ୟ କିରଣର ଗୋଟିଏ ଛଟା ଭଳି । ୧୭୭୧ ମସିହାରେ ହେଲଭେଟିଅସ ପୁସ୍ତକ ରଚନା ସମାପ୍ତ କରିବା ବେଳକୁ ଅତ୍ୟନ୍ତ ପୀଡ଼ିତ ହୋଇ ଯାଇଥିଲେ ଏବଂ ତାଙ୍କର ମୃତ୍ୟୁ ପରେ ହିଁ କେବଳ ୧୭୭୩ ମସିହାରେ ଏହା ପ୍ରକାଶିତ ହୋଇଥିଲା । ଅନତି ବିଳମ୍ବରେ ଏହା ସେଇସବୁ ସାମାଜିକ ଗୋଷ୍ଠୀମାନଙ୍କର ମାର୍ଗ ଦର୍ଶକଭାବେ କାର୍ଯ୍ୟକଲା ଯେଉଁମାନେ ଏକଛତ୍ରବାଦ ଓ ସାମନ୍ତବାଦ ବିରୋଧରେ ଅବିଚଳ ସଂଗ୍ରାମ ନିମନ୍ତେ ପ୍ରସ୍ତୁତ ହେଉଥିଲେ ।

ପୁସ୍ତକର ମୂଳ ବିଷୟ ଆଦୌ ଅସ୍ପଷ୍ଟ ନୁହେଁ । ଏହା ଅତି ପ୍ରାଞ୍ଜଳ ଓ ବାସ୍ତବ : ପ୍ରାୟ ସବୁ ଜାତି କାହିଁକି ଦୁଃଖରେ କାଳାତିପାତ କରୁଛନ୍ତି ଏବଂ ଏ ଅବସ୍ଥା ବଦଳାଇବା ଲାଗି କଣ କରାଯିବା ଉଚିତ ?

ପ୍ରଜ୍ଞାବାଦୀମାନେ—ଏନଲାଇଟେନଚବୃନ୍ଦ—ଯେଉଁ ମହତ ଆଦର୍ଶ ତୋଳି ଧରିଛନ୍ତି

ଏବଂ ସେମାନଙ୍କ ଦ୍ୱାରା ଉପସ୍ଥାପିତ ସମସ୍ୟାବଳୀର ଯେଉଁ ଉଚ୍ଚ ସାମାଜିକ ତାତ୍ପର୍ଯ୍ୟ ରହିଛି ତାହା ସେମାନଙ୍କୁ ମାର୍କସବାଦୀ ଦର୍ଶନର ନିକଟତର କରୁଛି । ଐତିହାସିକ ବସ୍ତୁବାଦ, "ଅଷ୍ଟାଦଶ ଶତାବ୍ଦୀର ମହାନ ଫରାସୀ ଦାର୍ଶନିକମାନେ ଯେଉଁ ମତ ନିର୍ଦ୍ଧାରଣ କରି ଯାଇଥିଲେ ତାହାର ଏକ ଅଧିକ ଯୁକ୍ତିସମ୍ମତ ସମ୍ପ୍ରସାରଣ ଭଳି ପ୍ରତୀତ ହେଉଛି"(୧) ବୋଲି ମାର୍କସ ଯେଉଁ ମତ ଦେଇଥିଲେ ତାହା ଯଥାର୍ଥବୋଧ ହେଉଛି ।

ଜନସାଧାରଣ କାହିଁକି ଦୁଃଖ ଭୋଗ କରୁଛନ୍ତି, ଏ ଦୁଃଖର ମୂଳ କାରଣ କଣ ଏବଂ ଏ ଅବସ୍ଥା କିପରିଭାବେ ସୁଧାରି ହେବ—ଏ ପ୍ରଶ୍ନଗୁଡ଼ିକର ଉତ୍ତର ହେଲଭେଟିଅସ କିପରି-ଭାବରେ ଦେଇଛନ୍ତି ।

ଏ ଦୁଃଖର ମୂଳ କାରଣ ରହିଛି ଅସମାନତାରେ । ଭୌତିକ ତଥା ଆତ୍ମିକ ସୁଯୋଗ ବଣ୍ଟନରେ ଅସମାନତା । ପରବର୍ତ୍ତୀକାଳରେ, ଅସମାନତାର ଅବଗୁର ବିଷୟ ପ୍ରମାଣ ବେଳେ ହେଲଭେଟିଅସ ସମାଜ ବିଜ୍ଞାନର ବିକାଶ ସମ୍ପର୍କିତ ଏକ ଯୁଗାନ୍ତକାରୀ ବିଚାର ଉପସ୍ଥାପନ କରିଛନ୍ତି । **ଜନସାଧାରଣ ସମାନ ହୋଇ ଜନ୍ମଗ୍ରହଣ କରିଛନ୍ତି**—ଆଜି ଏ ବିଚାର ଖୁବ୍ ସ୍ୱାଭାବିକ, କାରଣ ତାହା ଅତି ସ୍ପଷ୍ଟ ପ୍ରତୀତ ହେଉଥିଲେ ମଧ୍ୟ ସେତେବେଳେ ଏହା ଥିଲା କମାଣର ଏକ ଚମକପ୍ରଦ ଗର୍ଜନ । ବହୁତ ଲୋକଙ୍କୁ ଏହା କଠୋର, ଅସାଧାରଣ ଓ ଧମକପୂର୍ଣ୍ଣ ମନେ ହୋଇଥିଲା । ଆତଙ୍କପ୍ରଦ ତୀକ୍ଷ୍ଣତା ସହକାରେ ହେଲଭେଟିଅସ ସମଗ୍ର ସାମନ୍ତବାଦୀ-ଶ୍ରେଣୀ ବ୍ୟବସ୍ଥାକୁ ଚ୍ୟାଲେଞ୍ଜ କଲେ ଏବଂ ତା'ର ଏଇ ମୌଳିକ ଥିସୀସ ପ୍ରତି ଆହ୍ୱାନ ଜଣାଇଲେ ଯେ ଶ୍ରେଣୀମାନଙ୍କର ଅସମାନତା ହେଉଛି ଜନସାଧାରଣଙ୍କ ଭିତରେ ରହିଥିବା ମୌଳିକ, ସ୍ୱାଭାବିକ ଅସମାନତାର—ଯେଉଁ ପରିବେଶରୁ ସେମାନେ ଆସିଛନ୍ତି ତାହାର ଅସମାନତାର ଫଳାଫଳ । ଆଉ ସେହି ଆକ୍ରମଣରେ ସନ୍ତୁଷ୍ଟ ନ ହୋଇ, ହେଲଭେଟିଅସଙ୍କ ଥିସୀସରେ (ମାନବତାବାଦୀ ଜାନ ଜାକୁଇସ ରୁସୋ ମଧ୍ୟ ଏହାଠାରୁ ଭିନ୍ନ ସ୍ଥିତି ଗ୍ରହଣ କରିଥିଲେ, ଆଉ ତାହା ଏତେ ସ୍ୱାଧୀନ ସ୍ଥିତି ନ ଥିଲା) ବିଜ୍ଞାନର ତତ୍କାଳୀନ ବିଚାରର ବିରୋଧ କରାଗଲା ।

ଲୋକେ ସମାନ ହୋଇ ଜନ୍ମ ନେଇଛନ୍ତି, ଆଉ ସେମାନଙ୍କ ଅସମାନତା ଆସୁଛି

---

(୧) କାର୍ଲ ମାର୍କସ, ଫ୍ରେଡରିକ ଏଙ୍ଗେଲସ—**ନିର୍ବାଚିତ ରଚନାବଳୀ** ଖଣ୍ଡ ୩, ପୃଷ୍ଠା-୧୧୫ ।

କେବଳମାତ୍ର ସେମାନଙ୍କର **ସାମାଜିକ ପୃଷ୍ଠଭୂମି**ରୁ । ହେଲଭେଟିଅସଙ୍କ ମୌଳିକ ଥିଓରିସଗୁଡ଼ିକ ମଧ୍ୟରୁ ଏହା ଅନ୍ୟତମ । ସମାଜବିଜ୍ଞାନର ଏହା ଏକ ପ୍ରଧାନ ପ୍ରସ୍ତାବନା ଯାହାକୁ ପରବର୍ତ୍ତୀକାଳରେ ମାର୍କସବାଦ ସର୍ଜନା କରିଥିଲା । ଏହା ଏକ ମୌଳିକ ଥିଓରି, କାରଣ ବୈପ୍ଳବିକ ରୂପାନ୍ତରର କ୍ରିୟାକର୍ମ ନିମନ୍ତେ ଏହା ତାତ୍ତ୍ୱିକ ଭିତ୍ତିଭୂମି ଯୋଗାଇଛି : **ମଣିଷ** ଯଦି କିଛି ନିର୍ମାଣ କରେ, ତେବେ ସେଇ **ମଣିଷ ହିଁ** ଏହାର ପୁନର୍ନିର୍ମାଣ କରି ପାରିବ ।

ଅସମାନତା ରହିଛି କାହିଁକି ଏବଂ ତାହାକୁ କି ଉପାୟରେ ଦୂର କରାଯାଇ ପାରିବ ? ଏଇ ପ୍ରଶ୍ନଗୁଡ଼ିକର ପ୍ରଣୟନ ତୁଳନାରେ ଉତ୍ତର ଦାନ କାର୍ଯ୍ୟରେ ( ଅନ୍ୟ ସମସ୍ତ ପ୍ରାଜ୍ଞଙ୍କ ସଦୃଶ ) ହେଲଭେଟିଅସ ଅପେକ୍ଷାକୃତ ଦୁର୍ବଳ ପ୍ରମାଣିତ ହୋଇଛନ୍ତି । ଏଇଠାରେ ହିଁ ଏନଲାଇଟେନମେଣ୍ଟପନ୍ଥୀଙ୍କର—ପ୍ରାଜ୍ଞମାନଙ୍କର—ନିର୍ଦ୍ଦିଷ୍ଟ-ଭାବେ ସଙ୍କୀର୍ଣ୍ଣ ଚରିତ୍ର ପ୍ରକଟିତ ହୁଏ । ହେଲଭେଟିଅସଙ୍କ ମତରେ ଅସମାନତାର କାରଣ ହେଉଛି ଜନସାଧାରଣଙ୍କ ଅଜ୍ଞତା, ଏବଂ ଏପରି ସବୁ ଉତ୍ତମ ବିଧିବିଧାନ ପ୍ରଣୟନରେ ଓ ତାକୁ କାର୍ଯ୍ୟକାରୀ କରିବାରେ ସେମାନଙ୍କର ଅକ୍ଷମତା ଯାହା ଗୋଟିଏ ପକ୍ଷରେ ଅହଂବାଦ ଓ ସ୍ୱାର୍ଥପରତାର ପ୍ରସାରକୁ ବାଧା ଦେବ ଏବଂ ଅନ୍ୟ ପକ୍ଷରେ ଆତ୍ମତ୍ୟାଗ ଓ ନିଃସ୍ୱାର୍ଥପରତାକୁ ଉତ୍ସାହିତ କରିବ ।

ତେଣୁ ତା'ର ପ୍ରତିଷେଧକ ବ୍ୟବସ୍ଥା ହେଲା : ଅଜ୍ଞତାକୁ ଶିକ୍ଷା ଦ୍ୱାରା ପ୍ରତିରୋଧ କରାଯିବ, ଆଉ ଅକଲ୍ୟାଣକର ସମାଜ ସଂଗଠନକୁ ବିରୋଧ କରିବ ଏକ ଉତ୍ତମ ଓ ବିଜ୍ଞ ସମାଜ ସଂଗଠନ ।

କେଉଁ ପ୍ରକାର ସମାଜ ସଂଗଠନ ଓ କେଉଁ ରକମର ବିଧିବିଧାନକୁ ହେଲଭେଟି-ଅସ ଉତ୍ତମ ଓ ବିଜ୍ଞ ବୋଲି ବିଚାର କରନ୍ତି ? ତାଙ୍କର କାର୍ଯ୍ୟକ୍ରମ ହେଲା ଏଇଭଳି : ପ୍ରଥମତଃ, ଧନୀର ସମ୍ପଦ ହ୍ରାସ କରିବା ଓ ଦରିଦ୍ରର ସମ୍ପଦ ବୃଦ୍ଧି କରିବା ଅତ୍ୟାବଶ୍ୟକ ; ସମ୍ପଦରେ ଅସମାନତା ରହିଥିଲେ ସୁଦ୍ଧା (ବ୍ୟକ୍ତିଗତ ଉତ୍ସାହ ଓ ଉଦ୍ୟମଶୀଳତାର ମୂଳସୂତ୍ର ଥିବା ବ୍ୟକ୍ତିଗତ ମାଲିକାନାକୁ ହେଲଭେଟିଅସ ଆକ୍ରମଣ କରି ନାହାନ୍ତି) **ସୁଖର** (ଏଥିସହକାରେ ଗୁରୁତ୍ୱପୂର୍ଣ୍ଣ ହେଲା ସୁଯୋଗର ସମାନତା ଏବଂ ସମାନ ରାଜନୈତିକ ଓ ଆଇନଗତ ଅଧିକାର) ସମାନତା ଏଠାରେ ରହିଛି । ଆଇନ ଦୃଷ୍ଟିରେ ସମସ୍ତେ ସମାନ (ରାଷ୍ଟ୍ର ବ୍ୟବସ୍ଥା ହେଲା ପ୍ରଜାତାନ୍ତ୍ରିକ) ଏବଂ ଉତ୍ତରାଧିକାର ସୂତ୍ରରେ କୌଣସି ସୁଯୋଗ ହାସଲ କରାଯିବ ନାହିଁ । ଦ୍ୱିତୀୟରେ, ଗୀର୍ଜା ଦ୍ୱାରା ଦମନ ତଥା ଧର୍ମୀୟ ମାଦକ ସେବନକୁ ନିଷିଦ୍ଧ କରିବା ଏକାନ୍ତ ଅପରିହାର୍ଯ୍ୟ ହେବ । ଧର୍ମର ସ୍ଥାନ ଗ୍ରହଣ କରିବ ବିଜ୍ଞାନ ।

ସାମନ୍ତବାଦର ଅର୍ଥନୈତିକ ଭିତ୍ତିଭୂମି ଏବଂ ଆତ୍ମିକ ପରିବେଶ କଥା ଯଦି ବିଗ୍ଚାରକୁ ନିଆଯିବ ତେବେ ହେଲଭେଟିଅସଙ୍କ କାର୍ଯ୍ୟକ୍ରମ ଉତ୍ସାହପ୍ରଦ ପ୍ରତୀତ ହେବ । ଏଙ୍ଗେଲସ ଲେଖିଥିଲେ ଯେ ଏନଲାଇଟନମେଣ୍ଟର ଅନ୍ୟାନ୍ୟ ପ୍ରକାଶ ଭଳି ଏ କ୍ଷେତ୍ରରେ ମଧ୍ୟ, "ସେ କାଳର ସମାଜ ଓ ଶାସନର ପ୍ରତ୍ୟେକଟି ରୂପକୁ, ପ୍ରତ୍ୟେକଟି ପୁରାତନ ପାରଂପରିକ ଧାନଧାରଣାକୁ ଯୁକ୍ତିବିବର୍ଜିତ ଆଖ୍ୟା ଦେଇ ଅଳିଆଗଦାକୁ ଫିଂଗି ଦିଆଗଲା ; ଏ ଯାଏ ପୃଥିବୀ କେବଳମାତ୍ର ପକ୍ଷପାତ ଦ୍ୱାରା ପରିଚାଳିତ ହୋଇଛି ; ଅତୀତର ସବୁ ବିଷୟ କେବଳ ଦୟା ଓ ତାଚ୍ଛଲ୍ୟର ଯୋଗ୍ୟ । ଆଜି, ସର୍ବପ୍ରଥମ, ଦିବାଲୋକ ଉଦ୍ଭାସିତ ହେଲା, ଯୁକ୍ତିର ରାଜ୍ୟ ଆସିଲା ; ଏହାର ପରବର୍ତ୍ତୀ କାଳରେ ଅନ୍ଧ ବିଶ୍ୱାସ, ଅବିଗ୍ଚାର, ବିଶେଷ ସୁବିଧା, ଆଉ ଦମନର ସ୍ଥାନ ଗ୍ରହଣ କରିବ ଚିରନ୍ତନ ସତ୍ୟ, ଚିରନ୍ତନ ଅଧିକାର, ପ୍ରକୃତି ଉପରେ ଆଧାରିତ ସମାନତା ଏବଂ ମଣିଷର ଅବିଚ୍ଛେଦ୍ୟ ଅଧିକାର ।"(୧) ଏହା ଠିକ୍ କଥା ଯେ ଏଭଳି ଏକ ଯୁକ୍ତିଯୁକ୍ତ ପରିକଳ୍ପନା କିଏ କାର୍ଯ୍ୟକାରୀ କରିବ ସେ ସମୟରେ ଏପରି ପ୍ରଶ୍ନ ଉଠିଥିଲା । ହେଲଭେଟିଅସ କହୁଥିଲେ ଯେ ଜନସାଧାରଣଙ୍କ ଉପରେ, ନିମ୍ନ ଶ୍ରେଣୀସମୂହ ଉପରେ ନିର୍ଭର କରିବା ଅସମ୍ଭବ ; ଏକ ବିକୃତ ଓ କୃତ୍ରିମ ସମାଜରେ ସେମାନେ ଲାଳିତପାଳିତ ହୋଇଛନ୍ତି ; ତେଣୁ କରି ସେମାନେ କୃତ୍ରିମ ଶିକ୍ଷା ଲାଭ କରିଛନ୍ତି, କୃତ୍ରିମ ସ୍ୱାର୍ଥର ପୋଷକ ସେମାନେ ଏବଂ ଏଭଳି ଏକ ପରିକଳ୍ପନାକୁ ସେମାନେ କାର୍ଯ୍ୟକାରୀ କରିବେ ନାହିଁ (କରିପାରିବେ ନାହିଁ) । ଗୋଟିଏ ବ୍ୟକ୍ତି ଉପରେ ଆଶା ରଖାଯାଇ ପାରେ —ଏକ ଦୃଢ଼ ଓ ବିଜ୍ଞ ବିଧାୟକ ଓ ସମ୍ରାଟ । ଅବଶ୍ୟ ସେ ନିଜେ ମଧ୍ୟ ସେଇ ପରିବେଶରୁ ଉଦ୍‌ଭବ ହୋଇଥିବେ, ଆଉ ସେ ହେତୁରୁ ତାଙ୍କ ଠାରୁ ଅଧିକ କିଛି ଆଶା କରିବା ବୃଥା । ତଥାପି, ଭାଗ୍ୟର ରେଖା ଫିଟି ଯିବା ସମ୍ଭବ । ଏକଶହ ବା ଦୁଇଶହ ବର୍ଷ ଅପେକ୍ଷା କରିବା ସମ୍ଭବ । ତଥାପି ଯଦି କୌଣସି ବିକଳ୍ପ ଦୃଷ୍ଟିଗୋଚର ନ ହୁଏ ତେବେ କ'ଣ କରାଯିବ ? ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯେ ତତ୍ତ୍ୱ ଓ ପରିକଳ୍ପନାସବୁ ଆଗରୁ ରହିଥିଲା, ଆଉ ସେ ସବୁ ଥିଲା ପରିପକ୍ୱ ।

ଅବଶ୍ୟ ପ୍ରକୃତ ରୂପାନ୍ତର ନିମନ୍ତେ ଚେଷ୍ଟିତ ଥିବା ପ୍ରତ୍ୟେକ ଲୋକଙ୍କୁ ଭାଗ୍ୟ ଡୋରି ଉପରେ ନିର୍ଭର କରିବାର ଏଇ ମନୋଭାବ ନିଶ୍ଚିତଭାବେ ଅପ୍ରୀତିକରବୋଧ

---

(୧) କାର୍ଲମାର୍କସ, ଫ୍ରେଡରିକ ଏଙ୍ଗେଲସ :
**ନିର୍ବାଚିତ ରଚନାବଳୀ,** ଖଣ୍ଡ–୩, ପୃ–୧୧୬ ।

ହୋଇଥିବ । ହେଲେ, ଏହାକୁ ସହ୍ୟ କରାଯାଇପାରେ, ଯେହେତୁ କାର୍ଯ୍ୟକ୍ରମଟି ଥିଲା ଉତ୍ତମ । ଆଉ ଏନଲାଇଟନେର ତଥା ଅଷ୍ଟାଦଶ ଶତାବ୍ଦୀର ଅନ୍ୟ ପ୍ରଗତିବାଦୀ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ମଧ୍ୟରୁ କେହି ହେଲେ ଏ ବିଷୟରେ ସନ୍ଧିହାନ ନ ଥିଲେ । ଅତଏବ ଜଣେ ଉପଯୁକ୍ତ ବିଧାୟକଙ୍କ ନିମନ୍ତେ ପ୍ରତୀକ୍ଷା କରିବା ହିଁ ଥିଲା ଏକମାତ୍ର କାମ ।

ମାତ୍ର ପରିସ୍ଥିତି ଅଧିକ ଜଟିଳ ହୋଇ ଉଠିଲା । ଅଷ୍ଟାଦଶ ଶତାବ୍ଦୀର ଅନ୍ତିମ ବର୍ଷଗୁଡ଼ିକର ଐତିହାସିକ ଘଟଣାବଳୀ ଏପରି ହେଲା ଯେ ଏନଲାଇଟନମେଣ୍ଟର ସମଗ୍ର କାର୍ଯ୍ୟକ୍ରମ ପ୍ରତି ଏହା ସନ୍ଦେହ ଉଦ୍ରେକ କଲା ।

ସମସ୍ୟା ହେଲା ଏଇ ଯେ ହେଲଭେଟିଅସଙ୍କ ଆଶାର ବହୁ ପୂର୍ବରୁ, ଜଣେ ବିଧାୟକ ଦୃଢ଼ନୀତି କ୍ଷେତ୍ରରେ ଆବିର୍ଭୂତ ହେଲେ—ଏଇ ଦାର୍ଶନିକଙ୍କ ମୃତ୍ୟୁର ମାତ୍ର କୋଡ଼ିଏ ବର୍ଷ ପରେ । ଏହି "ବିଧାୟକ" ଥିଲେ ଫରାସୀ ବିପ୍ଳବ ଓ ତା'ର ନେତା ମାକସିମିଲିଆନ ଫ୍ରାଙ୍କୋଂଏସ ମାରୀ ରବସପିଅର । ଦେଖାଗଲା ଯେ ଏନଲାଇଟନମେଣ୍ଟ ଆଦର୍ଶର ଯାବତୀୟ ପ୍ରୟୋଜନୀୟ ଗୁଣ ରବସପିଅରଙ୍କଠାରେ ହିଁ ରହିଛି । ସେ ଥିଲେ ଜଣେ ବିଜ୍ଞ, ଦୁର୍ନୀତି ସମ୍ଭାବନାରୁ ମୁକ୍ତ ଓ ଦୃଢ଼ ବିଧାୟକ । ହେଲଭେଟିଅସଙ୍କ କାର୍ଯ୍ୟକ୍ରମକୁ ଅବିଚଳିତଭାବରେ ଆଉ ତା ସାଙ୍ଗେ ସାଙ୍ଗେ ନିଷ୍ଠା ସହକାରେ ରୂପାୟନ କରିବା ନିମନ୍ତେ ସେ ଆଗେଇ ଆସିଲେ ।

ରବସପିଅର ପ୍ରକୃତପକ୍ଷେ ଥିଲେ ଜଣେ ବିଜ୍ଞ, ଦୃଢ଼ମନା ଓ ଦୁର୍ନୀତିରୁ ଊର୍ଦ୍ଧ୍ୱରେ ଥିବା ବ୍ୟକ୍ତି । ଏନଲାଇଟନମେଣ୍ଟ ପ୍ରକଳ୍ପର ନୀତିଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ଯେଉଁମାନେ ପ୍ରସ୍ତୁତ ନଥିଲେ (ଅଥବା ଅନ୍ତତଃ ପକ୍ଷେ ଯଥେଷ୍ଟ ପ୍ରସ୍ତୁତ ନ ଥିଲେ) ସେମାନଙ୍କୁ ସଫଳତା ପୂର୍ବକ ସେ ଦୂରେଇ ଦେଲେ (ଅତଏବ ଏ ଲୋକମାନେ 'ଯୁକ୍ତିଯୁକ୍ତତା ଶକ୍ତି'ର ବିରୁଦ୍ଧରେ "ଅଜ୍ଞତାର ଶକ୍ତିମାନଙ୍କର" ହିତଆରଭାବେ କାର୍ଯ୍ୟ କଲେ ।) ମୁନାଫାଖୋର, କୁଚକ୍ରୀ, ଚିରନ୍ତନ ନ୍ୟାୟ ଓ ଚିରନ୍ତନ ନୀତିଗୁଡ଼ିକର ଶତ୍ରୁ, ବିପ୍ଳବର ଶତ୍ରୁମାନଙ୍କର ଗୋପନ ମେଣ୍ଟ ଭୁକ୍ତ ବୋଲି ରବସପିଅର ଯେଉଁମାନଙ୍କୁ ବିଚାର କରୁଥିଲେ ସେମାନଙ୍କୁ ସେ ନିପାତ କରି-ଦେଲେ । ସେମାନେ ହେଲେ ଷୋଡ଼ଶ ଲୁଇ, ମିରାବୋ, ଗିରୋଣ୍ଡିଷ୍ଟବୃନ୍ଦ, ଦାନ୍ତନ, ଚଉମେଟେ, ହିବର୍ଟ, ସାନସକୁଲେଟ ନେତୃମଣ୍ଡଳୀ ତଥା ଅନ୍ୟମାନେ, ଅର୍ଥାତ୍ ପ୍ରତିକ୍ରିୟା ଶୀଳ, ଉଦାରପନ୍ଥୀ ଓ ବାମପନ୍ଥୀମାନେ । ଏନଲାଇଟନମେଣ୍ଟ କାର୍ଯ୍ୟକ୍ରମର ସଫଳତା ପାଇଁ ଯେଉଁମାନେ ପ୍ରତିବନ୍ଧକ ଥିଲେ ବୋଲି ରବସପିଅର ବିଶ୍ୱାସ କରୁଥିଲେ ସେମାନଙ୍କ ମଧ୍ୟରୁ କାହାରିକୁ ବାଦ ଦିଆଗଲା ନାହିଁ । ପ୍ରୋଗ୍ରାମର ଦାବୀଗୁଡ଼ିକ ମଧ୍ୟ ଅଧିକ ନିର୍ଦ୍ଦିଷ୍ଟ ହେବାକୁ

ଲଗିଲ୍ : ଜନସାଧାରଣଙ୍କ ଭୌତିକ ସ୍ଥିତିରେ ସମାନତା ଆଣିବା, ସମାନ ଅଧିକାର ପ୍ରବର୍ତ୍ତନ କରିବା, ଏକ ପ୍ରଜାତନ୍ତ୍ର ସ୍ଥାପନ କରିବା, ଗୀର୍ଜା ପ୍ରଭୁତିଙ୍କ କ୍ଷମତାକୁ ସୀମାବଦ୍ଧ କରିବା ଇତ୍ୟାଦି । ହେଲଭେଟିଅସ ଓ ରୁସୋ, ତୁମେ କବରରୁ ବାହାରି ଆସ ଏବଂ ଆନନ୍ଦ ଉତ୍ସାହରେ ସାମିଲ ହୁଅ !

ମାତ୍ର ଏହା ପରେ ହେଲା କଣ ? ଯେତେବେଳେ ଚିତ୍ରପଟରେ ଶେଷ ରେଖା ଅଙ୍କିତ ହେବାକୁ ଯାଉଛି, ଯେଉଁ ସମୟରେ ଗୋଟିଏ ମାତ୍ର କ୍ଷୁଦ୍ର ପଦକ୍ଷେପ ଉପରେ ସୁବର୍ଣ୍ଣଯୁଗର ପ୍ରାରମ୍ଭିକ ଅବସ୍ଥାରେ ପହଞ୍ଚି ଯାଇ ହୋଇଥାନ୍ତା, ଠିକ୍ ସେତିକବେଳେ ମହାନ ବିଧାୟକ ରବସପିଅର ଛଅ ସପ୍ତାହ କାଳ ରାଜନୈତିକ ମଞ୍ଚରୁ··ଅନ୍ତର୍ଦ୍ଧାନ ହୋଇଗଲେ । ଆଉ, ୮ମ ଥରମିଡର (ଜୁଲାଇ ୨୬), ୧୭୯୪ରେ ଜନଭେନସନରେ ଗୋଟିଏ ଅଭିଭାଷଣ ଦେଲେ, ଯାହାକୁ ତାଙ୍କର ସିଭିଲ ଉଇଲ—ଇଚ୍ଛାପତ୍ର—କୁହାଗଲା । ଏନଲାଇଟନମେଣ୍ଟ ପ୍ରୋଗ୍ରାମକୁ କାର୍ଯ୍ୟକାରୀ କରିବା ପେଇଁ ତାଙ୍କ ଉଦ୍ୟମର ଫଳାଫଳ ସମ୍ପର୍କରେ ରବସପିଅର ତାଙ୍କ ଭାଷଣରେ ଗୋଟାଏ ବିଚିତ୍ର ଧରଣର ସାରାଂଶ ପ୍ରଦାନ କଲେ । ସେ କହିଲେ ଯେ ପାରିସରେ ଓ ଲୋକାଲିଟିମାନଙ୍କରେ ପ୍ରୋଗ୍ରାମ କାର୍ଯ୍ୟକାରୀ କରିବା ଉଦ୍ୟମ ହୋଇଥିଲା । ଏଥିରେ ଜଘନ୍ୟ କ୍ରସମର ଜୋରଜବରଦସ୍ତି, ଜନ-ସାଧାରଣଙ୍କ ଉପରେ ଉତ୍ପୀଡନ, କ୍ଷୁଧା, ଦେଶପ୍ରେମୀମାନଙ୍କୁ ଜେଲରେ ପୁରାଇବା—ଏସବୁ ଚାଲିଲା । "ଜନସାଧାରଣ ଶିକୁଳି ବଦଳେଇଛନ୍ତି, ହେଲେ ତାଙ୍କର ଭାଗ୍ୟ ବଦଳେଇ ନାହାନ୍ତି ।"(୧)

ହେଲଭେଟିଅସ ତାଙ୍କର ପ୍ରସିଦ୍ଧଗ୍ରନ୍ଥ ରଚନା କାଳରେ ଯେଉଁ ସ୍ୱପ୍ନ ଦେଖିଥିଲେ ଏହା ତାହା ନୁହେଁ । ଅଥବା ରବସପିଅର ନିଜେ ଯେଉଁଥିପାଇଁ ପ୍ରୟାସ କରିଥିଲେ ଏହା ତାହା ନୁହେଁ । ଏହା କହି ରବସପିଅର ଭାଷଣରେ କହିଥିଲେ : "ଅପରାଧର ପ୍ରତିରୋଧ ସକାଶେ ମୁଁ ବଞ୍ଚିଛି, ତାହା ସଙ୍ଗଠିତ କରିବା ପାଇଁ ନୁହେଁ । ସାଧୁ ଲୋକ-ମାନେ ନିରାପଦରେ ନିଜ ମାତୃଭୂମିର ସେବା କରିବାର ବେଳ ଆହୁରି ଆସି ନାହିଁ । ଦଗାବାଜମାନଙ୍କ ଗୋଠ ହାତରେ ଶାସନ କ୍ଷମତା ରହିଥିବା ଯାଏଁ ସ୍ୱାଧୀନତାର

(୧) ମାକ୍ସିମିଲିଆନ ରବସପିଅର—**ନିର୍ବାଚିତ ଗ୍ରନ୍ଥାବଳୀ**—ତିନି ଖଣ୍ଡରେ ନଉକା ପ୍ରକାଶନ, ମସ୍କୋ ଦ୍ୱାରା ପ୍ରକାଶିତ ୧୯୬୫ ।
ଖଣ୍ଡ ୩, ପୃଷ୍ଠା-୨୧୮, ୨୧୯ (ରୁଷ ଭାଷାରେ) ।

ରକ୍ଷକମାନେ ଅନାଡ଼ଆ ହୋଇ ରହିବେ ।"(୧) ପରଦିନ ରବସପିଅର୍ ଗିରଫ ହେଲେ ଓ ତତ୍ପରଦିନ ତାଙ୍କୁ ପାରିସର ପ୍ଲେସ ଡ ଗ୍ରୀଭରେ ଫାଶି ଦିଆଗଲା । ଏକ ସ୍ୱେଚ୍ଛାଚାରୀ ଶାସକ ନେପୋଲିଅନ ପ୍ରଥମ, ତାଙ୍କ ସ୍ଥାନରେ ଆସି ପ୍ରଜାତନ୍ତ୍ରକୁ ଧ୍ୱଂସ କରଦେଲେ ଏବଂ ନିଜକୁ ସମ୍ରାଟ ଘୋଷଣା କଲେ ।

ଏନଲାଇଟନମେଣ୍ଟର ତତ୍ତ୍ୱ ଓ ପ୍ରୟୋଗ ସମ୍ବନ୍ଧୀୟ କାହାଣୀର ଏକ ମହାନ ବିଧାୟକଙ୍କ ଦ୍ୱାରା ପ୍ରଣୀତ ରାଜନୈତିକ ବିଧିବିଧାନରେ ଯୁକ୍ତିଯୁକ୍ତତାର ଅଖଣ୍ଡ ଶକ୍ତିମତ୍ତା ରହିଛି ବୋଲି ଯେଉଁ ବିଶ୍ୱାସ ଥିଲା, ତାହାର ଦୁଃଖାନ୍ତ ପରିସମାପ୍ତି ଏଇଠି ଘଟିଲା । ଏଙ୍ଗେଲସ ଲେଖିଲେ, "ଯୁକ୍ତିଯୁକ୍ତତା ଉପରେ ଆଧାରିତ ରାଷ୍ଟ୍ର ସମ୍ପୂର୍ଣ୍ଣରୂପେ ଧୂଳିସାତ୍ ହୋଇଗଲା" ।(୨)

ବିଗିଡ଼ିଲା କଣ ? ଏ ଆଦର୍ଶର ପରାଜୟ ଘଟିଲା କାହିଁକି ? ବିପ୍ଳବର ଗତିଧାରା ଏବଂ ମାକ୍ସିମିଲିଆନ ରବସପିଅରଙ୍କ ଜୀବନ ଓ କର୍ମକାଣ୍ଡର ଅବସାନ ଏପରି ରହସ୍ୟାବୃତ ରହିଲା କାହିଁକି ? ଏ ସମସ୍ତ ଅଯୌକ୍ତିକ ବୋଧ ହେଉଛି, ଜଣାଯାଉଛି ଯେପରିକି ଏହା ହେଉଛି ଏକା ସମୟରେ ଘଟିଥିବା ଏକ ମର୍ମାନ୍ତିକ ଜଟିଳତା । ଅତ୍ୟନ୍ତ ପ୍ରତିଭାସମ୍ପନ୍ନ ବ୍ୟକ୍ତିମାନେ ଏ ସମସ୍ୟାବଳୀ ସମ୍ବନ୍ଧରେ ଅନେକ ଚିନ୍ତା କରିଛନ୍ତି । ଅଗ୍ରଗାମୀ ସାମାଜିକ ଚିନ୍ତାଧାରାର ଇତିହାସରେ ଏମାନଙ୍କୁ ଇଉଟୋପୀୟ ବା କଳ୍ପନାବିଳାସୀ ସମାଜବାଦୀ ଆଖ୍ୟା ଦିଆଯାଇଛି । ୧୮୦୨ ମସିହାରେ ସେଣ୍ଟ ସାଇମନ ତାଙ୍କର ପୁସ୍ତକ **ଲେଟେ୍ସ ଡ୍ନ ହାବିଟାଣ୍ଟ ଡି ଜେନଭା ଏ ସେସ୍ କଣ୍ଟେମପୋରାଇନସ** ପ୍ରକାଶ କଲେ । ୧୮୦୮ ମସିହାରେ ଚାର୍ଲସ ଫୁରିଅରଙ୍କ ପୁସ୍ତକ **ଥିଓରି ଡେସ କ୍ୱାଟ୍ରେ ମୁଭମେଣ୍ଟସ୍ ଏଟ୍ ଡେସ୍ ଡେଷ୍ଟିନସ ଜେନେରାଲସ** ଛପା ହେଲା । ଏହା ପୂର୍ବରୁ ୧୮୦୦ ମସିହାରେ ସ୍କଟଲଣ୍ଡର ନିଉ ଲାନାର୍କଠାରେ ରବର୍ଟ ଓଏନ୍ ସମାଜବାଦୀ ଢାଞ୍ଚାରେ ଏକ ଲୁଗାକଳ ଚଳାଇଥିଲେ ।

ଫରାସୀ ବିପ୍ଳବରେ ଯେଉଁ ସମସ୍ତ ମୋଡ଼ ଆସିଲା ଓ ବାଙ୍କାଟଙ୍କା ରାସ୍ତା ଅତିକ୍ରମ କରିବାକୁ ପଡ଼ିଲା ତାହାକୁ ଅନୁଧ୍ୟାନ କରି ଇଉଟୋପୀୟ ସମାଜବାଦୀମାନେ ଏଇ ସିଦ୍ଧାନ୍ତରେ

---

(୧) ମାକସିମିଲିଆନ ରବସପିଅର—**ନିର୍ବାଚିତ ଚିନ୍ତାବଳୀ** ଖଣ୍ଡ ୩, ପୃଷ୍ଠା-୨୩୦ ।

(୨) କାର୍ଲମାର୍କସ ଓ ଫ୍ରେଡରିକ ଏଙ୍ଗେଲସ—**ନିର୍ବାଚିତ ରଚନାବଳୀ** ଖଣ୍ଡ-୩ ପୃଷ୍ଠା-୧୧୮ ।

ପହୁଞ୍ଚିଲେ ଯେ ଏହାକୁ ଯଦ ଶିକ୍ଷା ଓ ଅଜ୍ଞତା, ସାଧୁତା ଓ ଅସାଧୁତା, ନିଷ୍କପଟତା ଓ କପଟତା, ପ୍ରଭୃତି ମଧ୍ୟରେ ସଂଘର୍ଷ ବୋଲି ବିଚାର କରାଯାଏ, ତେବେ ଆଉ କିଛି କାରଣ ଏଥିରୁ ବାହାରିବ ନାହିଁ । ଏହି ବିଶିଷ୍ଟ ଭାବୁକମାନେ ସେମାନଙ୍କ ବିଶ୍ଳେଷଣର ଭିତ୍ତିଭୂମିରେ ଅନ୍ୟ ଏକ ବିଷୟକୁ ମଧ୍ୟ ଗ୍ରହଣ କରିଥିଲେ । ତାହା ହେଲା ପରସ୍ପର ସହିତ ମେଳ ଖାଉ ନଥିବା ଲକ୍ଷ୍ୟଗୁଡ଼ିକୁ ଅନୁସରଣ କରୁଥିବା ବୃହତ ସାମାଜିକ ଗୋଷ୍ଠୀମାନଙ୍କ ମଧ୍ୟରେ ସଂଘର୍ଷ । ସେଣ୍ଟ-ସାଇମନଙ୍କର ଜନୈକ ସୁପରିଚିତ ଅନୁଗାମୀ ସେଣ୍ଟ-ଆମାଣ୍ଡ ବାଜାର୍ଡ (୧୭୯୧—୧୮୩୨) କହନ୍ତି ଯେ ସେମାନେ ନିଜର ବିଶ୍ଳେଷଣ ପ୍ରକ୍ରିୟା ମଧ୍ୟରେ ସେ ସବୁ ପାର୍ଟିକୁ ଅନ୍ତର୍ଭୁକ୍ତ କରିଥିଲେ ଯେଉଁମାନେ ଗୋଟିକ ଉତ୍ତାରେ ଗୋଟିଏ ବିପ୍ଳବକୁ ପରିଚାଳନା କରିଥିଲେ । ଏହା କରିବା ସମୟରେ ବିଭିନ୍ନ ପାର୍ଟିର ଭିନ୍ନ ଭିନ୍ନ ସାମାଜିକ ଶ୍ରେଣୀ ସହିତ ଥିବା ସମ୍ପର୍କ ବିଷୟ ବିଚାର କରିଥିଲେ । କେଉଁ ସବୁ ବିଶେଷ ଘଟଣାକ୍ରମ ଯୋଗୁଁ ସେମାନେ ଗୋଟିକ ପରେ ଗୋଟିଏ ବିପ୍ଳବର ଅଗ୍ରଣୀ ହେଲେ ଆଉ ସେମାନେ କିପରି ପରିଶେଷରେ ଉଭେଇ ଗଲେ ତାହା ମଧ୍ୟ ଏମାନେ ବିଚାର କରିଥିଲେ ।(୧) ଏ ବିଶ୍ଳେଷଣ ଗୋଟିଏ ଉଲ୍ଲେଖନୀୟ ଆବିଷ୍କାରରେ ଉପନୀତ ହେଲା । ତାହା ହେଲା ଏଇ ଯେ ଫରାସୀ ବିପ୍ଳବର ଇତିହାସ, ଯୁକ୍ତିଯୁକ୍ତତା ଓ ଭାବାବେଗ ମଧ୍ୟରେ, ଅଥବା ଶିକ୍ଷା ଓ ଅଜ୍ଞତା ମଧ୍ୟରେ ସଂଘର୍ଷର ଇତିହାସ ନଥିଲା । ଏହା ଥିଲା ଶ୍ରେଣୀ ସଂଗ୍ରାମର ଇତିହାସ । ପ୍ରଥମେ ସେଣ୍ଟ-ସାଇମନ ଓ ପରେ ଫୁରିଅର ଏହା ପ୍ରମାଣ କଲେ । ଏହି ଐତିହାସିକ ବିଧାନର ଆବିଷ୍କାର ପ୍ରତି ଏଙ୍ଗେଲସ ଅତ୍ୟନ୍ତ ଗୁରୁତ୍ୱ ଆରୋପ କରିଥିଲେ : "…ଫରାସୀ ବିପ୍ଳବକୁ ଶ୍ରେଣୀ ଯୁଦ୍ଧ ବୋଲି ସ୍ୱୀକାର କରିବା…୧୮୦୨ ମସିହାରେ ଥିଲା ଏକ ଅତ୍ୟନ୍ତ ସୁଦୂର ପ୍ରସାରି ଆବିଷ୍କାର ।(୨) ଏଙ୍ଗେଲସଙ୍କର ଏଇ ମୂଲ୍ୟାୟନ ବେଶ ସ୍ମରଣଯୋଗ୍ୟ : ସହଜରେ ପ୍ରଶଂସାମୁଖର ହେବା ବ୍ୟକ୍ତି ଏଙ୍ଗେଲସ ନୁହନ୍ତି । ଏଥିରୁ ଜଣାଯିବ ୧୭୮୯—୧୭୯୪ ର ମହାନ ଫରାସୀ ବିପ୍ଳବ ଏପରି ଏକ ଘଟଣା ଥିଲା ଯାହାର ବିକାଶ ମୂଳରେ ରହିଥିଲା ସ୍ଫଟିକ ସଦୃଶ ସ୍ୱଚ୍ଛ

---

(୧) କାର୍ଲମାର୍କସ ଓ ଫ୍ରେଡରିକ ଏଙ୍ଗେଲସ—**ନିର୍ବାଚିତ ରଚନାବଳୀ** ଖଣ୍ଡ—୩ ପୃ: ୧୨୧ ।

(୨) ଜର୍ଜି ପ୍ଲେଖାନଭ—**ନିର୍ବାଚିତ ଦାର୍ଶନିକ ରଚନାବଳୀ,** ଖଣ୍ଡ ୧, ପୃ: ୫୦୦ ଦ୍ରଷ୍ଟବ୍ୟ ।

ପ୍ରତିକ୍ରିୟାଶୀଳ ରୂପ ଗ୍ରହଣ କରିଥିଲା । ରବେସପିଅରଙ୍କ ଅବସ୍ଥା ଆଉ ପ୍ରହେଳିକା ହୋଇ ରହିଲା ନାହିଁ । ରବେସପିଅରଙ୍କ କର୍ମନୀତି, ରାଜନୈତିକ ସଂସ୍ଥାସଙ୍ଗଠନ ଓ ଆଦେଶ-ନିର୍ଦ୍ଦେଶ ଯେଉଁ ସମୟରେ ଫରାସୀ ବିପ୍ଲବର ପ୍ରମୁଖ ଅଂଶମାନଙ୍କର ସ୍ୱାର୍ଥ ସହିତ ଖାପ ଖାଉଥିଲା, ଆଉ ଯେତେବେଳେ ଐକ୍ୟବଦ୍ଧ ଜନସାଧାରଣଙ୍କର ଖାପ ଖାଉଥିବା ସ୍ୱାର୍ଥ ରହିଥିଲା, ସେ ସମୟରେ ରବେସପିଅର ସଫଳକାମ ହୋଇଥିଲେ । ଆଉ ଯେତେବେଳେ ଏ ସ୍ୱାର୍ଥଗୁଡ଼ିକ ଭିତରେ ମେଳ ରହିଲା ନାହିଁ ସେତେବେଳେ ସେ ପରାସ୍ତ ହେଲେ ।

୧୭୯୩ ଜୁନ ମାସ ଆଗରୁ ଏବଂ ଚରମ ଦକ୍ଷିଣପନ୍ଥୀ ଓ ଚରମ ବାମପନ୍ଥୀମାନଙ୍କ ସହିତ ବିଭାଜନ ହେବା ପୂର୍ବରୁ, ଏନରାଜିଙ୍କ ଅନୁଗାମୀମାନଙ୍କ ପ୍ରୋଗ୍ରାମର ଗୋଟାଏ ମଜଭୁତ ସାମାଜିକ ସମର୍ଥନ ରହିଥିଲା : ପ୍ରାରମ୍ଭିକ ସଂଗ୍ରହୀ ଶକ୍ତି ଓ ନିମ୍ନ ଶ୍ରେଣୀସ୍ଥ ଲୋକଙ୍କଠାରୁ ମଧ୍ୟ ଶ୍ରେଣୀସ୍ଥ ଶିଳ୍ପ ବୁର୍ଜୁଆ ଯାଏ ଏହା ପଛରେ ରହିଥିଲେ । ସମସ୍ତେ ଷୋଡ଼ଶ ଲୁଇ ତଥା ଶ୍ରେଣୀଗତ ବିଶେଷାଧିକାର ବିରୋଧରେ ଐକ୍ୟବଦ୍ଧ ହୋଇଥିଲେ । ସମ୍ପଦ କ୍ଷେତ୍ରରେ ଥିବା ବ୍ୟବଧାନକୁ କମ କରିବା ଲାଗି ଓ ସାଧାରଣ ଲୋକଙ୍କ ସପକ୍ଷରେ ତାହାର ପୁନର୍ବଣ୍ଟନ ନିମନ୍ତେ ସମସ୍ତେ ଏକମତ ଥିଲେ । ଅଭିଜାତବର୍ଗ ଉପରେ ଲଗାମ ଦେବା ଉଦ୍ଦେଶ୍ୟରେ ଓ ଗୀର୍ଜାର ପ୍ରତିପତ୍ତିକୁ ସଙ୍କୁଚିତ କରିବା ସକାଶେ ନିୟମକାନୁନ ଜାରି କରିବାକୁ ସମସ୍ତେ ଚାହୁଁଥିଲେ । ମାତ୍ର ପରେ ସାଧାରଣ ଲୋକଙ୍କ ମଧ୍ୟରେ ଭାଗ ଭାଗ ହେବା ଆରମ୍ଭ ହେଲା । ତାହାର ଆଭ୍ୟନ୍ତରୀଣ ସାମାଜିକ ଅନ୍ତର୍ଦ୍ୱନ୍ଦ୍ୱ ବୃଦ୍ଧି ପାଇଲା ଓ ବୁର୍ଜୁଆ ଅଂଶ ଅଧିକ ଶକ୍ତିଶାଳୀ ହେଲା । ନିୟମକାନୁନ ପ୍ରବର୍ତ୍ତିତ ଯୋଗୁଁ ସେମାନଙ୍କ ବିକାଶରେ ଅଙ୍କୁଶ ଲାଗିଲା । ସମ୍ପଦର ସର୍ବାଧିକ ସୀମା ଧାର୍ଯ୍ୟ ସମ୍ପର୍କରେ ସେମାନେ ଅସନ୍ତୁଷ୍ଟ ଥିଲେ ଏବଂ ବିପ୍ଲବ ବନ୍ଦ କରି ଦେବାକୁ ଚାହିଁଲେ । ଅନ୍ୟ ପକ୍ଷରେ, ବାମପନ୍ଥୀମାନେ ବ୍ୟକ୍ତିଗତ ମାଲିକାନାକୁ ଉତ୍ସାହିତ କରିବା ନୀତିରେ ଅସନ୍ତୁଷ୍ଟ ଥିଲେ । ଆହୁରି ଅଧିକ କଠିନ ନିୟମ କାନୁନ ସେମାନେ ଚାହୁଁଥିଲେ । (ଅନ୍ୟତମ 'ଏନରେଜୀ' ଜାକୁଇସ ରୁକ୍ସ ଲେଖିଲେ : "ସମାନତାର କଣ୍ଟକ ସମାନଭାବେ ଧନୀମାନଙ୍କର ଶିରଚ୍ଛେଦନ କରିବା ଆବଶ୍ୟକ ।"(୧)

ଜନସାଧାରଣଙ୍କର ଏକ ଶିଳା ସଦୃଶ ଐକ୍ୟ ଖଣ୍ଡବିଖଣ୍ଡିତ ହୋଇ ଯାଉଥିଲା ।

---

(୧) ମାକ୍ସିମିଲିଆନ ରବେସପିଅର, **ନିର୍ବାଚିତ ଗ୍ରନ୍ଥାବଳୀ,** ତିନି ଖଣ୍ଡରେ ପ୍ରକାଶିତ ନଉକା ପ୍ରକାଶନୀ, ମସକୋ, ୧୯୬୫, ଖଣ୍ଡ ୧, ପୃ: ୬୨ (ରୁଷ ଭାଷାରେ) ।

ଯେଉଁ ଦୁଇଟି ବିଚାରଧାରା ପ୍ରକାଶ ପାଇଥିଲା ତାହା ହେଲା ଯେ ଘରୋଇ ମାଲିକାନା ତଥା ତା'ର ପରିଣତି ରହିବ, ଅଥବା ଘରୋଇ ସମ୍ପତ୍ତିର ଅଭିବୃଦ୍ଧି ଉପରେ ଲଗାମ ରଖିବା ଲାଗି କଡ଼ାକଡ଼ି ବାଧ୍ୟ ବ୍ୟବସ୍ଥା ରହିବ । ଏ ଦୁଇ ବିକଳ୍ପ ବାହାରେ ଏକ ତୃତୀୟ ବିକଳ୍ପ ଖୋଜି ବାହାର କରିବା ସକାଶେ ରବସପିଅର ଅବଶ୍ୟ ଯତ୍ନବାନ ଥିଲେ । ଏହା କରିବାକୁ ଯାଇ ସେ ତାଙ୍କର ଉଭୟ ବାମପନ୍ଥୀ ଓ ଦକ୍ଷିଣପନ୍ଥୀ ବିରୋଧୀଙ୍କୁ ଅପସାରଣ କଲେ, ଆଉ ଜନ ସମର୍ଥନ ହରାଇଲେ । ଏହାର ଫଳସ୍ୱରୂପ ସେ ଦୁର୍ବଳ ହୋଇ ପଡ଼ିଲେ ଏବଂ ସହଜରେ ଗିରଫ ହେଲେ । ସେତେବେଳକୁ ତାଙ୍କର ମାତ୍ର ୨୨ ଜଣ ଅନୁଗାମୀ ରହିଥିଲେ । ପ୍ଲେସ ଡ଼ ଗ୍ରୀଭକୁ ଅଣାଗଲାବେଳେ ସେ ସମ୍ପୂର୍ଣ୍ଣ ଏକୁଟିଆ ଥିଲେ । ଜନସାଧାରଣଙ୍କର ଏକ ଶିଳା ସଦୃଶ ଐକ୍ୟ ଭିତରେ ବିରାଟ ଫାଙ୍କ ଆସି ଯାଉଥିଲା । ଏହା ଯେଉଁ ଅତଳ ଗହ୍ୱର ସୃଷ୍ଟି କରିଥିଲା ସେଥିରେ ରବସପିଅରଙ୍କ ପାର୍ଟି ତଳିତଳାନ୍ତ ହୋଇପଡ଼ିଗଲା ।

ସେଣ୍ଟ-ସାଇମନ ଓ ଫୁରିଅର ଯେଉଁ ଐତିହାସିକ ବିଧାନ ଆବିଷ୍କାର କଲେ, ତାହା ଫଳରେ ଫରାସୀ ବିପ୍ଳବର ଉଲ୍ଲେଖନୀୟଭାବେ ସ୍ପଷ୍ଟ ଏକ ଐତିହାସିକ ବିଶ୍ଳେଷଣର ପଥ ପରିଷ୍କାର ହୋଇଗଲା । (ଅବଶ୍ୟ ଏହା ସ୍ମରଣ ରଖିବା ପ୍ରୟୋଜନ ଯେ ସେମାନଙ୍କର ଅନୁଶୀଳନ ଦ୍ୱାରା ଶ୍ରେଣୀ ଓ ଶ୍ରେଣୀ ସଂଘର୍ଷ ସମ୍ପର୍କିତ ସମ୍ପୂର୍ଣ୍ଣ ବିଜ୍ଞାନସମ୍ମତ ଓ ବୋଧଗମ୍ୟ ଏକ ତତ୍ତ୍ୱ ନିର୍ଦ୍ଦିଷ୍ଟଭାବେ ବାହାର ନଥିଲା । ପରେ ମାର୍କସବାଦ ଏହାର ବିଶଦ ବ୍ୟାଖ୍ୟା ଦେଇଥିଲା । ହେଲେ, ସେଣ୍ଟ-ସାଇମନ ଓ ଫୁରିଅରଙ୍କ ରଚନାବଳୀରେ ସେ ତତ୍ତ୍ୱର ଏକ ରେଖାଚିତ୍ର ସାଧାରଣଭାବେ ପ୍ରଦତ୍ତ ହୋଇଥିଲା) ।

ଇଉଟୋପୀୟ ବା କଳ୍ପସ୍ୱର୍ଗମୂଳକ ସମାଜବାଦର ପ୍ରବକ୍ତାମାନଙ୍କ ଆବିଷ୍କାରର ଅନ୍ୟ ଏକ ପ୍ରଧାନ ବୈଶିଷ୍ଟ୍ୟ ହେଲା ଯେ **ଅର୍ଥନୀତିର ଅଗ୍ରଣୀ ଭୂମିକାକୁ,** ଅର୍ଥନୈତିକ ସ୍ୱାର୍ଥକୁ ଏବଂ ସମାଜ ବିକାଶରେ ଶିଳ୍ପର ପ୍ରୟୋଜନୀୟତାକୁ ଏଥିରେ ସ୍ୱୀକାର କରାଯାଇଥିଲା । ଅବଶ୍ୟ ସେଣ୍ଟ-ସାଇମନ ବିଦ୍ରୂପ କରି ଲେଖିଥିଲେ ଯେ ବାଣିଜ୍ୟ, ଉତ୍ପାଦନ ତଥା କଳକାରଖାନାର ଶ୍ରମିକମାନଙ୍କ କାମ କରିବାର ଅବସ୍ଥା ଅନୁଶୀଳନ କରିବା ଓ ବର୍ଣ୍ଣନା କରିବା ଅପେକ୍ଷା ଗୀର୍ଜାର କାର୍ଡିନାଲମାନଙ୍କର ଚକ୍ରାନ୍ତ ଭିତରକୁ ପଶି, ଆଉ କୂଟନୀତିଜ୍ଞ ଓ ରାଜାମାନଙ୍କର ଗୁଳିବାଜି ଓ ବିଶ୍ୱାସଘାତକତାକୁ ବୁଝି ତା'ର ଇତିହାସ ରଚନା କରିବା ଢେର ବେଶି ଆମୋଦଦାୟକ । ତଥାପି ଏହା କରିବାକୁ ହେବ : ମଧୁର ମିଥ୍ୟାଠାରୁ କଣ୍ଟୁକିତ କଥାକୁ ଅଧିକ ଆଦରିବାକୁ ହେବ

ସେଣ୍ଟ-ସାଇମନ ତତ୍ତ୍ୱ କହିଥିଲେ ଏବଂ ଓଏନ ଆଚରଣରେ ପ୍ରମାଣ କଲେ ଯେ ରାଜନୀତିର ମୂଳସୂତ୍ର ଖୋଜିବାକୁ ହେବ ଅର୍ଥନୀତିରେ ଓ ରାଜନୈତିକ ଅର୍ଥନୀତିରେ । ଇଉଟୋପୀୟ ସମାଜବାଦୀମାନଙ୍କର ଏହା ଥିଲା ଦ୍ୱିତୀୟ ମହାନ ଆବିଷ୍କାର ।

ଇଉଟୋପୀୟ ସମାଜବାଦୀ ବିଚାରଧାରାର ତୃତୀୟ ମୁଖ୍ୟ ଲକ୍ଷଣଟି ହେଉଛି ପ୍ରଥମ ଦୁଇ ବୈଶିଷ୍ଟ୍ୟର ଏକ ଯୁକ୍ତିସମ୍ମତ ଅନୁବୃତ୍ତି । ଶ୍ରେଣୀ ସଂଗ୍ରାମ ପ୍ରତି, ଏବଂ ଶିଳ୍ପର ବିକାଶ ତଥା ପ୍ରୟୋଜନୀୟତା ପ୍ରତି ଯଦି ଏପରି ଗୁରୁତ୍ୱ ଆରୋପ କରାଯାଏ, ତାହାହେଲେ ଐତିହାସିକ ବିକାଶକୁ ଅନୁବୃତ୍ତିସମୂହର ଏକ ଶୃଙ୍ଖଳ ଭାବେ, ନ୍ୟାୟର ସାମ୍ରାଜ୍ୟ ପ୍ରତିଷ୍ଠା ଲାଗି ମହା ମହା ବ୍ୟକ୍ତି ଓ ଗୋଷ୍ଠୀମାନଙ୍କର ସଫଳ ବା ଅସଫଳ ପ୍ରୟାସର ଏକ ଶୃଙ୍ଖଳ ଭାବେ ଆଉ ବିଚାର କରାଯିବା ଉଚିତ ନୁହେଁ । ସମାଜବାଦୀମାନଙ୍କ ରଚନାସମୂହରେ ଐତିହାସିକ ପ୍ରକ୍ରିୟା କେତେକ **ବିଧିବିଧାନ** ଅନୁସରଣ କରି ବିକାଶପ୍ରାପ୍ତ ହୁଏ । ରବସ୍‌ପିଅର ଓ ଦାନ୍ତନଙ୍କ ଭଳି ଏନଲାଇଟନରମାନଙ୍କ ନିମନ୍ତେ ଫରାସୀ ବିପ୍ଳବ ଓ ତା'ର ସମାପ୍ତିର ଗତିଧାରାକୁ ଏକ ବିପର୍ଯ୍ୟୟ, ପତନ, ପଶ୍ଚାତଗମନ ପ୍ରଭୃତି ଭାବରେ ଦେଖା ଯାଉଥିଲା । ନବମ ଥରମିଡରର ବେଳେ ରବସ୍‌ପିଅର କନଭେନସନରେ ଘୋଷଣା କରିଥିଲେ : "ପ୍ରଜାତନ୍ତ୍ର ମରିଯାଇଛି, ଆଜି ଆମର ରହିଛି ଡାକୁମାନଙ୍କର ଏକ ରାଜତନ୍ତ୍ର" ।

ସମାଜବାଦୀମାନେ ଉତ୍ତର ଦେଲେ ଯେ ମୃତ୍ୟୁ ବିପ୍ଳବର ଘଟିନାହିଁ, ଏନଲାଇଟନରମାନଙ୍କର ତତ୍ତ୍ୱଗୁଡ଼ାକ ମରିଯାଇଛି । ହେଲେ, ବିପ୍ଳବ ହେଉଛି ପ୍ରଗତିର ସରରେ ଏକ ଅପରିହାର୍ଯ୍ୟ ଯୋଗସୂତ୍ର । ସାମନ୍ତବାଦୀ କର-ଟିକସ ଓ ଅସମାନତାକୁ ଏହା ହଟାଇ ଦେଲା, ଶିଳ୍ପର ଦ୍ରୁତ ବିକାଶ ସାଧନ କଲା ; ଚିନ୍ତାଧାରା, କଳା ଓ ସାହିତ୍ୟକୁ ଉନ୍ନତତର କଲା । ତେଣୁ ସେଣ୍ଟ-ସାଇମନ ଓ ଫୁରିଅର ଉଭୟ ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ କେବଳମାତ୍ର ଫରାସୀ ବିପ୍ଳବ ନୁହେଁ, ସାମଗ୍ରିକଭାବେ ଇତିହାସ ହିଁ ହେଉଛି ପ୍ରଗତିକୁ ଆଗେଇ ଯିବାର ସୋପାନ । ସେମାନଙ୍କ ଲେଖାମାନଙ୍କରେ ଗୋଟାଏ ଚିନ୍ତା ଅସ୍ପଷ୍ଟଭାବେ ଦେଖା ଦେବାକୁ ଲାଗିଲା ଯେ ଇତିହାସ ହେଉଛି ପ୍ରଗତିପଥକୁ ଅଗ୍ରସର ହେବା ନିମନ୍ତେ ଗୋଟିକ ପରେ ଗୋଟିଏ ପରିବର୍ତ୍ତିତ ହେଉଥିବା ସ୍ତରମାନଙ୍କର ଏକ ସରି-ଚେନ ।

ଏହା ସଙ୍ଗେ ସଙ୍ଗେ, ସେଣ୍ଟ ସାଇମନ ଓ ଫୁରିଅରଙ୍କ ମତାନୁସାରେ ଇତିହାସରେ ପ୍ରଗତି ବୋଇଲେ ସ୍ୱଚ୍ଛନ୍ଦରେ ଊର୍ଦ୍ଧ୍ୱଗାମୀ ହେବାର ମାର୍ଗକୁ ବୁଝାଏ ନାହିଁ । ଏହା

ହେଉଛି ସାମାଜିକ ଦ୍ୱନ୍ଦ୍ୱମାନଙ୍କରେ ପରିପୂର୍ଣ୍ଣ ଏକ ପଥ, ତାହା ହିଁ ଇତିହାସର ଚାଳିକା ଶକ୍ତି । ବୁର୍ଜୁଆ ସମାଜରେ ଥିବା ଦ୍ୱନ୍ଦ୍ୱର ଯେଉଁ ବିଶ୍ଳେଷଣ ସେମାନେ ଦେଇଥିଲେ ମାର୍କସ ଓ ଏଙ୍ଗେଲସ ତା'ର ଭୂୟସୀ ପ୍ରଶଂସା କରିଥିଲେ । ବୁର୍ଜୁଆ ସମାଜର ସେହି ବିଶ୍ଳେଷଣରେ ଫୁରିଅର ସଠିକ୍‌ଭାବେ ଦର୍ଶାଇଥିଲେ ଯେ "ଖୋଦ ଅତି ପ୍ରାଚୁର୍ଯ୍ୟରୁ ହିଁ ଦାରିଦ୍ର୍ୟର ଜନ୍ମ," ଆଉ ସେଣ୍ଟ-ସାଇମନ କହିଥିଲେ ଯେ ଏଠାରେ "ମଣିଷକୁ ଶୋଷଣ କରୁଛି ମଣିଷ ।" ପ୍ରସଙ୍ଗ କ୍ରମେ କୁହାଯାଇପାରେ ଯେ ପୁଞ୍ଜିବାଦୀ ବ୍ୟବସ୍ଥାରେ ସାମାଜିକ ସମ୍ପର୍କ ପ୍ରଣାଳୀର ସମ୍ପୂର୍ଣ୍ଣ ନିର୍ଭୁଲ ଚିତ୍ରଣ ସର୍ବପ୍ରଥମେ ଦେଇଥିଲେ ସେଣ୍ଟ-ସାଇମନ ତାଙ୍କର ଏଇ ସଂକ୍ଷିପ୍ତ ଫର୍ମୁଲରେ । ପୁଣି, ଓଏନ ଏ ବିଷୟରେ ଦୃଢ଼ ନିଶ୍ଚିତ ଥିଲେ ଯେ ସବୁ ବିପତ୍ତିର ମୂଳରେ ରହିଛି ସମ୍ପତ୍ତିର ଘରୋଇ ମାଲିକାନା, ଯାହା ବଦଳରେ ସର୍ବସାଧାରଣ ମାଲିକାନା ପ୍ରତିଷ୍ଠିତ ହେବା ଆବଶ୍ୟକ । ଐତିହାସିକ ବିକାଶର ସାଧାରଣ ଗତିଧାରା ସମ୍ପର୍କରେ ଏକ ନିଗୂଢ଼ ଧାରଣାର ଭିତ୍ତି ଉପରେ ପୁଞ୍ଜିବାଦର ଯେଉଁ ସମାଲୋଚନାମୂଳକ ବିଶ୍ଳେଷଣ କରାହେଲା, ତହିଁରେ ଶୋଷଣ ଏବଂ ଘରୋଇ ମାଲିକାନାକୁ ଉଚ୍ଛେଦ କରିବାର ପ୍ରୟୋଜନୀୟତା ଦର୍ଶାଯାଇଥିଲା, ଏବଂ ସମାଜ ତତ୍ତ୍ୱର ଏକ ନୂତନ ସ୍ୱରୂପ ସକାଶେ ରେଖାଚିତ୍ର ଦିଆଯାଇଥିଲା । ଏକଲିଭିଡ଼ୁଆଲିଜମ ସହିତ ଏହାର ତୁଳନା କରାଯାଇଥିଲା ଏବଂ ଏହାର ନାମକରଣ କରାଗଲା **ସମାଜବାଦ** ।

ଏହା ଥିଲା ଏକ ପାହୁଣ୍ଡ ଆଗକୁ ପଦକ୍ଷେପ । ତେବେ, ଇତିହାସ ବିଚାରରୁ ଏହାର ଯେଉଁ ସଙ୍କୀର୍ଣ୍ଣ ଚରିତ୍ର ଥିଲା ତାହା କ'ଣ ? କେଉଁ ସବୁ ସମସ୍ୟାମାନଙ୍କର ସମାଧାନ ନିମନ୍ତେ ଏହା ଅକ୍ଷମ ହୋଇଥିଲା ?

ପ୍ରଥମତଃ, ଇଉଟୋପୀୟ ସମାଜବାଦୀମାନଙ୍କର ସର୍ବାଧିକ ଉଲ୍ଲେଖନୀୟ ଆବିଷ୍କାର ସୁଦ୍ଧା ଥିଲା ଅସମ୍ପୂର୍ଣ୍ଣ ଅଧାପନ୍ତରିଆ । ଶ୍ରେଣୀ ଓ ଶ୍ରେଣୀ ସଂଗ୍ରାମ ସଂକ୍ରାନ୍ତ ସେମାନଙ୍କ ତତ୍ତ୍ୱରେ ସୁବିଧା ସୁଯୋଗର **ଉତ୍ପାଦନ** ପ୍ରକ୍ରିୟା ଉପରେ ଗୁରୁତ୍ୱ ଦିଆଯିବା ପରିବର୍ତ୍ତେ **ବଣ୍ଟନ**ର ପାର୍ଥକ୍ୟ ପ୍ରତି ଜୋର ଦିଆଯାଇଥିଲା । ସମାଜ ବିକାଶ କ୍ଷେତ୍ରରେ ଅର୍ଥନୀତିର ଗୁରୁତ୍ୱ ବିଷୟ ବିଚାର କଲାବେଳେ ସେମାନେ ସ୍ୱୀକାର କରିଥିଲେ ଯେ ସମସ୍ତ ପ୍ରକାର ସାମାଜିକ ପ୍ରପଞ୍ଚର ମୌଳିକ କଥା ହେଲା ଅର୍ଥନୀତି । ମାତ୍ର ସ୍ୱୟଂ ଅର୍ଥନୀତିର ବିକାଶ କ୍ଷେତ୍ରରେ ଯେଉଁ ଆଭ୍ୟନ୍ତରୀଣ ବିଧିସଙ୍ଗତି ରହିଛି ତାହା ସେମାନେ ବୁଝାଇ ପାରି ନଥିଲେ । ଅବିଶ୍ରାନ୍ତଭାବରେ ଓ ଦକ୍ଷତା ସହକାରେ ସେମାନେ ପୁଞ୍ଜିବାଦର ବ୍ୟବସ୍ଥାରେ ଥିବା ଶୋଷଣର ନିନ୍ଦା କଲେ, ହେଲେ ତାହା ବନ୍ଦ କରିବାର ଉପାୟ ଦର୍ଶାଇ ପାରିଲେ

ନାହିଁ । **ଶୋଷଣର ପଦ୍ଧତି** କାହାଦ୍ୱାରା ଓ କପଶଭାବରେ ଦୂର ହେବ ଏବଂ **ଏଥିରୁ ମୁକ୍ତ ଏକ ପଦ୍ଧତି** ସୃଷ୍ଟି ହେବ, ଏ ପ୍ରଶ୍ନର ସମାଧାନ ପାଇଁ ସେମାନେ ଯେଉଁ ଚେଷ୍ଟା କଲେ, ତହିଁରେ ହିଁ ସେମାନଙ୍କ ତତ୍ତ୍ୱଗୁଡ଼ିକର ଅସମ୍ପୂର୍ଣ୍ଣ ପ୍ରକୃତ ବିଶେଷଭାବେ ଲକ୍ଷ୍ୟ କରାଗଲା (ଯେପରିକି କିଛିକାଳ ପୂର୍ବେ ଏନଲାଇଟେନରଙ୍କ କ୍ଷେତ୍ରରେ ଦେଖା ଯାଇଥିଲା ) ।

ଏଭଳି ଏକ ରୂପାନ୍ତର ସାଧନ କରିବା ନିମିତ୍ତ କେଉଁ ନିର୍ଦ୍ଦିଷ୍ଟ ସାମାଜିକ ଶକ୍ତି ସମର୍ଥ ତାହାକୁ ଚିହ୍ନିବାରେ ସେମାନେ ଅକ୍ଷମ ହେଲେ । ଆଉ ସେମାନଙ୍କୁ ଏଥିପାଇଁ ଦୋଷ ଦିଆଯାଇ ପାରିବ ନାହିଁ ଯେହେତୁ ଇତିହାସ ଏହାକୁ ଯେଯାଏ "ଗୋପନ" ରଖିଥିଲା । ବିରୋଧାଭାସ ସଦୃଶ ଜଣାଗଲେ ମଧ୍ୟ ଏହା ଏକ ଐତିହାସିକ ବାସ୍ତବତା । **ସର୍ବହରାମାନେ** ଯେ ପ୍ରଧାନ ରୂପାନ୍ତରକାରୀ ଶକ୍ତି ଏହା ବୁଝିବା ନିମନ୍ତେ ବାସ୍ତବତା ସମ୍ପର୍କରେ ଓ ପ୍ରଚଳିତ ସମ୍ପର୍କ ସମ୍ବନ୍ଧରେ ଗଭୀର ଅଧ୍ୟୟନର ଅଭାବ ଯୋଗୁଁ ଇଉଟୋପୀୟ ସମାଜବାଦୀମାନେ ତାହା ଦେଖି ପାରି ନଥିଲେ । ଏ ଅଭାବ ଏଇଥିପାଇଁ ହେଲା ଯେ ସର୍ବହରାମାନେ ତଥାପି ଅତ୍ୟନ୍ତ ଦୁର୍ବଳ ଓ ଅସଂଗଠିତ ଥିଲେ । ସେମାନଙ୍କୁ ଶୋଷଣର ଏକ ଅସହାୟ, ଜୀବନ୍ତ ବସ୍ତୁଭାବେ ବିଚାର କରାଯାଉଥିଲା । ଏହା ଥିଲା ଏକ ଐତିହାସିକ ବିରୋଧାଭାସ ଯେ ଇଉଟୋପୀୟ ସମାଜବାଦୀମାନେ ଯଦିଓ ସମାଜର ଦ୍ୱନ୍ଦ୍ୱକୁ ଓ ତା'ର ସାରମର୍ମକୁ ଦେଖି ପାରୁଥିଲେ (ଧନୀ ଓ ନିର୍ଦ୍ଧନଙ୍କ ମଧ୍ୟରେ ସଂଘର୍ଷ), ନିର୍ଦ୍ଧନ ଲୋକଙ୍କ ପକ୍ଷ ଗ୍ରହଣ କରିଥିଲେ ଏବଂ ଶୋଷଣ ଦୂର କରିବାର ଏକ ଯୋଜନା ବାଢ଼ିଥିଲେ, ତଥାପି ସେ ଯୋଜନାକୁ କାର୍ଯ୍ୟକାରୀ କରିବା ଭଳି ପ୍ରକୃତ ଶକ୍ତି ନଥିଲା (ସବଳ ଯିଏ ସେ ରାଜି ହେବ ନାହିଁ ଏବଂ ନିପୀଡ଼ିତମାନେ ତାହା କାର୍ଯ୍ୟକାରୀ କରିବା ପାଇଁ ଏକାନ୍ତ ଦୁର୍ବଳ) । ତେଣୁ କରି, ଇଉଟୋପୀୟ ସମାଜବାଦୀମାନେ ବିଚାରବୁଦ୍ଧିକୁ ଓ ବିଧାୟକଙ୍କୁ ନିବେଦନ କରିବା ବ୍ୟତୀତ ଆଉ କିଛି କରି ନଥିଲେ । ଏହି କାରଣ ହେତୁ, ଇତିହାସର ନିର୍ଯ୍ୟାସକୁ ବୁଝିବା ଓ ତତ୍କାଳୀନ ସମାଜକୁ ଚିହ୍ନିବା କ୍ଷେତ୍ରରେ ଏନଲାଇଟେନମେଣ୍ଟରମାନଙ୍କ ତୁଳନାରେ ଏମାନେ ବହୁଦୂର ଅଗ୍ରସର ହୋଇଥିଲେ ହେଁ ଏହି ଭାବୁକମାନେ ସେମାନଙ୍କ ଐତିହାସିକ ଧାରଣାର ସବୁତକ **ଆଦର୍ଶବାଦରୁ** ମୁକ୍ତ ହୋଇ ପାରି ନଥିଲେ । ସର୍ବୋପରି, ମଣିଷର ଭାଗ୍ୟ ନିର୍ଣ୍ଣୟ କରିବା ନିମନ୍ତେ ବିଜ୍ଞ ବିଧାୟକଙ୍କ ଉପରେ ସେମାନଙ୍କର ନିର୍ଭରଶୀଳତାକୁ ସେମାନେ ପରିତ୍ୟାଗ କରି ନଥିଲେ । ଏନଲାଇଟେନରମାନଙ୍କ ଅପେକ୍ଷା ଏମାନଙ୍କ ପ୍ରୋଗ୍ରାମ ଅଧିକ ବାସ୍ତବବାଦୀ ଓ

ପ୍ରଗତିଶୀଳ ହୋଇଥିଲେ ସୁଦ୍ଧା ମୌଳିକଭାବେ ଏହା ଥିଲା ଇଉଟୋପୀୟ, ଯେହେତୁ କୌଣସି ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର କ୍ରିୟାକଳାପ ସହିତ ଏହାର ସଂଯୋଗ ନଥିଲା। ଲେନିନଙ୍କର ଅନ୍ତିମ ମୂଲ୍ୟାୟନର ଉଦ୍ଭବ ଏଇଠାରୁ : ସେଣ୍ଟ-ସାଇମନ ଓ ଫୁରିଅରଙ୍କ ସମାଜବାଦ "...ପୁଞ୍ଜିବାଦୀ ସମାଜର ସମାଲୋଚନା କରିଥିଲା, ତାହାକୁ ନିନ୍ଦା କଲା ଓ ନାରକୀୟ ବୋଲି ଘୋଷଣା କଲା, ତାହାର ଧ୍ୱଂସ ପାଇଁ ସ୍ୱପ୍ନ ଦେଖିଲା, ଏକ ଉନ୍ନତତର ସମାଜ ବ୍ୟବସ୍ଥାର ମନୋରମ କଳ୍ପନା କରିଥିଲା ଏବଂ ଧନିକମାନଙ୍କ ଭିତରେ ଏଇ ଦୃଢ଼ ପ୍ରତ୍ୟୟ ଜାଗ୍ରତ କରିବାର ଚେଷ୍ଟା କରିଥିଲା ଯେ ଶୋଷଣ ହେଉଛି ଏକ ଅନୈତିକ କ୍ରିୟା।

"ହେଲେ, ଇଉଟୋପୀୟ ସମାଜବାଦୀମାନେ ପ୍ରକୃତ ସମାଧାନର ମାର୍ଗ ସୂଚାଇ ପାରିଲେ ନାହିଁ। ପୁଞ୍ଜିବାଦୀ ବ୍ୟବସ୍ଥାରେ ଥିବା ମଜୁରି—ଦାସତ୍ୱର ପ୍ରକୃତ ଚରିତ୍ର ଏହା ବ୍ୟାଖ୍ୟା କରି ପାରିଲା ନାହିଁ, ଏହା ପୁଞ୍ଜିବାଦୀ ବିକାଶର ବିଧାନ ବୁଝାଇ ପାରିଲା ନାହିଁ ଅଥବା ଏକ ନୂଆ ସମାଜ ନିର୍ମାଣ କରିବାର ଯୋଗ୍ୟତା କେଉଁ **ସାମାଜିକ ଶକ୍ତିର** ରହିଛି ତାହା ଦର୍ଶାଇ ପାରିଲା ନାହିଁ।"(୧)

## କଳ୍ପନା ବିଳାସରୁ ବିଜ୍ଞାନ

ଇଉଟୋପୀୟ ସମାଜବାଦୀମାନେ ଯଥେଷ୍ଟ ଅଗ୍ରଗତି କରିଥିଲେ ସୁଦ୍ଧା ସେମାନଙ୍କ ବୈପ୍ଳବିକ ତତ୍ତ୍ୱକୁ ବୈପ୍ଳବିକ **ବିଜ୍ଞାନରେ** ପରିଣତ କରିବାକୁ ସକ୍ଷମ ହେଲେ ନାହିଁ। ମାତ୍ର ୧୮୩୦ ଓ ୧୮୪୦ ଦଶକମାନଙ୍କରେ ଗୁଡ଼ିଏ ପ୍ରଶ୍ନ ସାମନାକୁ ଆସିଲା ଯାହାର ସଠିକ ସମାଧାନ ଦ୍ୱାରା ହିଁ କେବଳ ବୈପ୍ଳବିକ ମତବାଦକୁ ବିଜ୍ଞାନର ସ୍ତରକୁ ଉନ୍ନୀତ କରାଯାଇ ପାରିଲା। ପ୍ରଥମ ପ୍ରଶ୍ନ ହେଲା ମୌଳିକ ଦ୍ୱନ୍ଦ୍ୱର ସେଇ ନିର୍ଯ୍ୟାସ ଯାହା ଉତ୍ପାଦନ ପ୍ରଣାଳୀର ବିକାଶକୁ ନିୟନ୍ତ୍ରଣ କରେ, ଆଉ ତାହାର ମାଧ୍ୟମରେ ସାମଗ୍ରିକ-ଭାବେ ସମାଜର ବିକାଶକୁ ନିୟନ୍ତ୍ରଣ କରେ। ତାହା ସଙ୍ଗେ ସଙ୍ଗେ ସାମାଜିକ ବିକାଶର ବସ୍ତୁଗତ ବିଧାନର ପାରସ୍ପରିକ ସମ୍ପର୍କକୁ ତଥା ଜନସାଧାରଣଙ୍କ ଚେତନଶୀଳ କ୍ରିୟାକର୍ମକୁ ପରିଚାଳିତ କରେ। ଦ୍ୱିତୀୟ ପ୍ରଶ୍ନର ସମ୍ପର୍କ ହେଲା ପୁଞ୍ଜିବାଦର ମୌଳିକ ଦ୍ୱନ୍ଦ୍ୱବିଜର ସୁନିର୍ଦ୍ଦିଷ୍ଟ ଲକ୍ଷଣସମୂହ ସହିତ ଯାହା ଏହି ସାମାଜିକ-ଅର୍ଥନୈତିକ ଗଠନ ବିନ୍ୟାସର ଐତିହାସିକ ସୀମାକୁ ନିର୍ଦ୍ଧାରଣ କରେ। ତୃତୀୟ ପ୍ରଶ୍ନ ହେଲା କେଉଁ ନିର୍ଦ୍ଦିଷ୍ଟ

(୧) ଭି. ଆଇ. ଲେନିନ—**ସଂଗୃହୀତ ଗ୍ରନ୍ଥାବଳୀ,** ଖଣ୍ଡ—୧୯, ପୃ: ୨୭।

ସାମାଜିକ ଶକ୍ତି ପୁରାତନ ସମାଜକୁ ଧ୍ୱଂସ କରିପାରିବ ଏବଂ ନୂତନ ସମାଜ ଗଠନ କରିବା ନିମିତ୍ତ ସମର୍ଥ ହେବ ।

ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଦେବା ନିମିତ୍ତ ୧୮୩୦ ଓ ୧୮୪୦ ଦଶକର ବିପ୍ଳବୀ-ମନୋଭାବାପନ୍ନ ତରୁଣମାନଙ୍କ ପକ୍ଷରେ ଏ ପ୍ରଶ୍ନଗୁଡ଼ିକ ପ୍ରତି ଉପଯୁକ୍ତ ମନୋବୃତ୍ତି ଗ୍ରହଣ କରିବା ଓ ତାକୁ ହୃଦୟଙ୍ଗମ କରିବା ଦରକାର ହେଲା । ସେମାନଙ୍କ ପକ୍ଷରେ ଏହା ଅନିବାର୍ଯ୍ୟ ଥିଲା ଯେ ସେମାନଙ୍କର ପୂର୍ବତନ ମହାନ ଚିନ୍ତାନାୟକମାନେ—ହେଲଭେଟିଅସଙ୍କଠାରୁ ଫୁରିଅରଙ୍କ ପର୍ଯ୍ୟନ୍ତ—ଅନ୍ୱେଷଣର ଯେଉଁ ପଥ ଅତିକ୍ରମ କରିଛନ୍ତି ସେମାନେ ନିଜେ ମଧ୍ୟ ସେଇ ଅନୁସନ୍ଧାନର ମାର୍ଗରେ ଯାଆନ୍ତୁ, ଆଉ ସେ ପ୍ରଶ୍ନଗୁଡ଼ିକର ସଠିକ୍ ଉତ୍ତର ବାହାର କରିବା ନିମନ୍ତେ ନିଜ ନିଜର ମଗଜ ଖର୍ଚ୍ଚ କରନ୍ତୁ ।

ମାର୍କସ ଓ ଏଙ୍ଗେଲସଙ୍କ ତାତ୍ତ୍ୱିକ ମତବାଦର ରଚନା ଓ ବିକାଶର ମେଳ ବହୁଳଭାବରେ ରହିଥିଲା । ଅଷ୍ଟାଦଶ ଶତାବ୍ଦୀରେ ଓ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଦେଖାଦେଇଥିବା ୟୁରୋପୀୟ ସାମାଜିକ ଚେତନା ସହିତ ସେମାନଙ୍କର ବୌଦ୍ଧିକ କ୍ରମବିକାଶର ପ୍ରକ୍ରିୟା ମଧ୍ୟରେ **ଇସ୍ତାହାର**ର ଭାବୀ ଲେଖକମାନେ ୟୁରୋପୀୟ ସମାଜଚେତନା ପୂର୍ବେ ସମ୍ମୁଖୀନ ହୋଇଥିବା ସମସ୍ତ ସଂଘାତ ଓ ପ୍ରତିବନ୍ଧକଗୁଡ଼ିକୁ ଅଧିକ ବିସ୍ତାରିତଭାବେ ଓ ଧୀରେ ଧୀରେ ହୃଦୟଙ୍ଗମ କରିଥିଲେ । **ଇସ୍ତାହାର** ପ୍ରସ୍ତୁତି ପାଇଁ କାର୍ଯ୍ୟ କରିବାରେ ଓ ତାହା ରଚନା କରିବାରେ ସେମାନେ ଏଇ ମାର୍ଗ ହିଁ ଅନୁସରଣ କରିଥିଲେ ।

୧୮୩୫ ମସିହାରେ ଯେତେବେଳେ କି ମାର୍କସଙ୍କର ବୟସ ମାତ୍ର ୧୭ ବର୍ଷ, ସେତେବେଳେ ସେ ସ୍କୁଲରେ ଗୋଟିଏ ପ୍ରବନ୍ଧ ଲେଖିଥିଲେ । ତାହାର ଶିରୋନାମା ସେ ରଖିଥିଲେ **ବୃତ୍ତି ନିର୍ବାଚନ କ୍ଷେତ୍ରରେ ଜଣେ ତରୁଣର ଭାବନା** । ଭବିଷ୍ୟତର ଏଇ ପ୍ରତିଭାଧର ତାଙ୍କର ରାଜନୈତିକ ଜୀବନ ଏହିପରିଭାବରେ ହିଁ ଆରମ୍ଭ କରିଥିଲେ ।

"ଗୋଟିଏ ପଶୁ କେଉଁ ପରିସର ଭିତରେ କ୍ରିୟାକର୍ମ କରିବ ତାହା ପ୍ରକୃତି ସ୍ଥିର କରି ଦେଇଛି । ଶାନ୍ତିର ସହିତ ସେ ସେଇ ସୀମା ଭିତରେ ବିଚରଣ କରେ, ତାହା ବାହାରକୁ ଯିବାର ଚେଷ୍ଟା ବି କରେନା, ଅନ୍ୟତ୍ର ଯିବାର କଳ୍ପନା ସୁଦ୍ଧା ତା'ର ନଥାଏ"(୧) ଏଇଭଳି ଯୁକ୍ତି ମାର୍କସ କରିଥିଲେ । ହେଲେ, ମଣିଷ ପ୍ରବାହ ସହିତ

---

(୧) କାର୍ଲ ମାର୍କସ, ଫ୍ରେଡରିକ ଏଙ୍ଗେଲସ—**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୧, ପୃ:୩

ନୀରବରେ ଖସିଯାଇ ପାରିବନାହିଁ, ଯିବା ଉଚିତ ମଧ୍ୟ ନୁହେ । ନିଷ୍କ୍ରିୟ ହୋଇ ଅଚଳ ଓ ଜରାଜୀର୍ଣ୍ଣ ଉପଦେଶ ଓ ପରମ୍ପରାର ଚକ୍ରବ୍ୟୁହ ଭିତରେ ସେ ବୁଲିବା ଉଚିତ ନୁହେଁ । ସେ କେଉଁ ଦିଗକୁ ମୁହାଁଇଛି ତାହା ନଭାବି, ତାହାର ସେଇ ଗତିଶୀଳତା ଗଠନମୂଳକ କି ନା ତାହା ବିଚାର ନ କରି, ଆଉ ସବୁ ପରମ୍ପରା ଭଲ କି ନୁହେଁ, ସବୁ ଉପଦେଶ ସଠିକ୍ କି ନୁହେ ତାହା ଚିନ୍ତା ନ କରି, ସେ ଅଗ୍ରସର ହେବା ଉଚିତ ନୁହେ । ସେ ନିରନ୍ତର ବିଶ୍ଳେଷଣ କରିବ, ତଉଲିବ, ଚିନ୍ତା କରିବ ଏବଂ ପରଖିବ—ଯେପରିକି ବୃତ୍ତି ନିର୍ବାଚନ ବେଳେ ସେ ସ୍ୱତଃସ୍ଫୂର୍ତ୍ତିତା ଦ୍ୱାରା ପ୍ରଭାବିତ ହେବ ନାହିଁ, ଅନ୍ତର୍ଦୃଷ୍ଟି ଅଥବା ଖିଆଲ ଦ୍ୱାରା ପରିଚାଳିତ ହେବ ନାହିଁ, ହଠାତ୍ ଆବେଗ ପ୍ରବଣତାରେ ଖସିଯିବ ନାହିଁ । ତାହାକୁ ଦାୟିତ୍ୱପୂର୍ଣ୍ଣଭାବେ ଓ ସଚେତନତା ସହକାରେ ବିଚାର କରିବାକୁ ପଡ଼ିବ, ଏବଂ ସେଥିପାଇଁ ଅତି ସ୍ପଷ୍ଟ ଓ ବିଶ୍ୱାସପ୍ରଦ ମାନଦଣ୍ଡ ପ୍ରୟୋଗ କରିବାକୁ ହେବ । "ଅତଏବ ଏପରି ନିର୍ବାଚନ ପ୍ରତି ବିଶେଷ ଗୁରୁତ୍ୱ ଦେବା ଜଣେ ତରୁଣର ନିଶ୍ଚିତଭାବେ ପ୍ରଥମ କର୍ତ୍ତବ୍ୟ ହେବା ଉଚିତ ଯିଏ ତାର କର୍ମ ଜୀବନ ଆରମ୍ଭ କରିବାକୁ ଯାଉଥିବ ଏବଂ ତା'ର ସର୍ବାଧିକ ମହତ୍ୱପୂର୍ଣ୍ଣ ବ୍ୟାପାରକୁ ଆକସ୍ମିକ ଯୋଗ ଉପରେ ଛାଡ଼ି ଦେବାକୁ ଚାହୁଁ ନଥିବ ।"(୧) ଏହା ହିଁ ଥିଲା ତରୁଣ ମାର୍କସଙ୍କ ଜୀବନଯାତ୍ରାର ପ୍ରଥମ ବିଧି ଏବଂ ନିଜ ପ୍ରତି ପ୍ରଥମ ନିର୍ଦ୍ଦେଶ ।

ନିଜ ପ୍ରବନ୍ଧରେ ମାର୍କସ ଏହାପରେ ନିଜର କର୍ମଜୀବନ ବାଛିବା ସମ୍ବନ୍ଧୀୟ ଆପଣା ମାନଦଣ୍ଡକୁ ବିସ୍ତାରିତଭାବେ ଲେଖିଥିଲେ ।

ଏହାପରେ ଆସିଲା ଉକ୍ତ ତରୁଣର ଚିନ୍ତା ରାଜ୍ୟର ଅତ୍ୟନ୍ତ ଗରିମାମୟ ଗଭୀର **ସିଦ୍ଧାନ୍ତ** : "...ମନୁଷ୍ୟର ପ୍ରକୃତି ଏପରିଭାବେ ଗଢ଼ା ହୋଇଛି ଯେ **କେବଳ** ନିଜର ସହଗାମୀ ଲୋକଙ୍କର ଉତ୍କର୍ଷତା ପାଇଁ, ସେମାନଙ୍କର କଲ୍ୟାଣ ପାଇଁ କାମ କରିବା ଦ୍ୱାରା ହିଁ ସେ ନିଜର ଉତ୍କର୍ଷତା ଅର୍ଜନ କରିପାରେ ।"(୨) ମାନବ ସମାଜର ସେବା କରିବା ଭିନ୍ନ ନିଜ ଉନ୍ନତିର ଅନ୍ୟ କୌଣସି ମାର୍ଗ ନାହିଁ—"ବ୍ୟକ୍ତିଗତ" ଓ "ସର୍ବସାଧାରଣ" ଭିତରେ ଯେଉଁ ପ୍ରକାର ସମ୍ପର୍କ ମାର୍କସ ବାଛି ନେଇଥିଲେ ଏହାହିଁ

---

(୧) କାର୍ଲ ମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ—**ସଂଗୃହୀତ ଗ୍ରଂଥାବଳୀ** ଖଣ୍ଡ—୧, ପୃ: ୩ ।

(୨) ଏଜନ୍ ପୃ: ୮ ।

ଥିଲା ତାର ନମୁନା । ସଂସାରକୁ ଉନ୍ନତ କରିବା ଦ୍ୱାରା ଜଣେ ବ୍ୟକ୍ତି ନିଜକୁ ଉନ୍ନତ କରେ—ଯମସ୍ତ କ୍ରମେ ଏଇ ଚିନ୍ତା ହିଁ ହୋଇଥିଲା ମାର୍କସବାଦୀ ଦର୍ଶନ ଓ ନୈତିକତାର ମୂଳମନ୍ତ୍ର ।

ସେତେବେଳେ ଅବଶ୍ୟ ଏହା ଥିଲା ମାତ୍ର ଏକ ସାଧାରଣ ଓ ବିମୂର୍ତ୍ତି ସୂତ୍ର ଯାହିଁରେ ଏ ପ୍ରଶ୍ନର କୌଣସି ଉତ୍ତର ନଥିଲା ଯେ ସଂସାରକୁ ଉନ୍ନତ କରିବାର ପନ୍ଥା ଓ ମାର୍ଗକୁ **କେଉଁ ଉପାୟରେ** ନିରୂପଣ କରାଯିବ ଏବଂ ଏହାର ଜ୍ଞାନ ମିଳିବ କେଉଁଠୁ । ଏହାର ଉପରେ ମାର୍କସ ଗମ୍ଭୀରଭାବରେ ଚିନ୍ତା କରିବାକୁ ଲାଗିଲେ ।

ମାର୍କସ ତାଙ୍କ ପିତାଙ୍କୁ ୧୮୩୭ ନଭେମ୍ବର ୧୦ ତାରିଖ ଦିନ ଲେଖିଥିବା ଏକ ଚିଠିରେ ଏ ନିର୍ଦ୍ଧାରଣ ବିଷୟ ବୁଝାଇଥିଲେ । ମାର୍କସଙ୍କ ଜୀବନରେ ଏ ଚିଠିଟି ଥିଲା ଏକ ମହତ୍ତ୍ୱପୂର୍ଣ୍ଣ ମାଇଲଖୁଣ୍ଟ । ମାର୍କସ ତାଙ୍କର ପ୍ରଥମ ଦାର୍ଶନିକ ନିବନ୍ଧ ଲେଖିବାର ଦୁଇବର୍ଷ ଭିତରେ କେତେ ଦୀର୍ଘ ପଥ ଯେ ଯେ ଅତିକ୍ରମ କଲେଣି ଏଥିରୁ ତାହା ହିଁ ବୁଝାଯାଉଥିଲା । ମାର୍କସଙ୍କର ଦାର୍ଶନିକ ଅଗ୍ରଗତି କେତେଦୂର ହୋଇଥିଲା ତାହାର ହୃଦୟଗ୍ରାହୀ ପ୍ରମାଣ ଏଥିରୁ ମିଳୁଥିଲା ।

ପ୍ରାରମ୍ଭ । ସତତା, ଆତ୍ମ ସମ୍ମାନ, କରୁଣା ଓ ସହାନୁଭୂତି ଭଳି ଉନ୍ନତ ଆଦର୍ଶର ଭାବନା ଭିତରେ ଲାଳିତ ପାଳିତ ହୋଇ ମଣିଷ ହୋଇଥିବା ଜଣେ ତରୁଣ ପକ୍ଷରେ ଏହା ଥିଲା ସ୍ୱାଭାବିକ ଗୁଣ । ମାର୍କସଙ୍କ ଭଳି ଜଣେ ତରୁଣ ନିଜ କର୍ମଜୀବନର ଗାଇଡ଼ଭାବେ ପୋଥିଗତ ସତ୍ୟର ଦୁନିଆକୁ ଧରି ନେଇଥିଲା ଅସତ୍ୟ ଓ ହିନ ବାସ୍ତବତା ଠାରୁ ସ୍ପଷ୍ଟତଃ ଯାହା ଅତ୍ୟନ୍ତ ପୃଥକ ଥିଲା । ସେହି ଧିବସଗୁଡ଼ିକର ତାଙ୍କ ଭାବନାକୁ ମାର୍କସ ନିମ୍ନପ୍ରକାରେ ବର୍ଣ୍ଣନା କରିଛନ୍ତି : "...ଆମ ଯୁଗ ଉପରେ ଆକ୍ରମଣ, ଚିନ୍ତା ଭାବନାର ଅତି ବିସ୍ତୃତ ଓ ଅପରିପକ୍ୱ ପରିପ୍ରକାଶ, ସ୍ୱାଭାବିକ କିଛି ନୁହେଁ, ସବୁ ବାଲିଘର, କ'ଣ ଅଛି ଓ କ'ଣ ହେବା ଉଚିତ ତାହା ମଧ୍ୟରେ ସଂପୂର୍ଣ୍ଣ ବିରୋଧିତା ।" (୧)

ପ୍ରାୟ ସେଇ ସମୟରେ ତରୁଣ ଏଙ୍ଗେଲସ ନିଜ ଚିନ୍ତାଭାବନାକୁ ଅନୁରୂପଭାବେ ବ୍ୟକ୍ତ କରିଥିଲେ : "...ରାତିରେ ମୋ ଆଖିକୁ ନିଦ ଆସୁ ନାହିଁ, ଯେହେତୁ ପ୍ରଚଳିତ ଶତାବ୍ଦୀର ଚିନ୍ତାଧାରା ମୋ ମୁଣ୍ଡକୁ ଘାରିଛି । ମୁଁ ଯେତେବେଳେ ପୋଷ୍ଟ ଅଫିସକୁ ଯାଏ ଆଉ ସେଠାରେ ପ୍ରୁସୀୟ ରାଜପରିବାରର ପ୍ରତୀକକୁ ଅନାଏ, ମୁକ୍ତିଲାଭର ଆକାଂକ୍ଷା ମୋତେ

---

(୧) ମାର୍କସ ଓ ଏଙ୍ଗେଲସ—**ସଂଗହୀତ ଗ୍ରଂଥାବଳୀ**, ଖଣ୍ଡ-୧, ପୃ: ୧୧ ।

ପାଗଳ କରିଦିଏ । ଯେତେଥର ମୁଁ ସମ୍ବାଦପତ୍ର ଦେଖେ ସେଥିରେ ମୁକ୍ତ ଯାତ୍ରାର ଅଗ୍ରଗତି ବିଷୟ ଖୋଜିବାକୁ ଲାଗେ । ମୋ କବିତା ଭିତରକୁ ସେ ଚିନ୍ତା ପଶିଆସେ ଏବଂ ସାଧୁସନ୍ନ୍ୟାସୀଙ୍କ ଆଲଖାଲ୍ଲା ଓ ନ୍ୟାୟାଧୀଶଙ୍କ ଲୋମଶ ପୋଷାକ ତଳେ ଲୁଚି ରହିଥିବା ସଂସ୍କାର ବିରୋଧୀ ଲୋକଙ୍କ ପ୍ରତି ବିଦ୍ରୂପ ଭାବନା ଉଙ୍କି ମାରେ ।"(୧)

"ଝାନ" ବାସ୍ତବତା ପ୍ରତି ବିତୃଷ୍ଣା, ତାହା ବିରୋଧରେ ପ୍ରତିବାଦ, ଉନ୍ନତ ଆଦର୍ଶ ପ୍ରତି ଅନୁଗତ ରହିବାର ଶପଥ—ଏଇସବୁ ଉଜ୍ଜ୍ୱଳ ଓ ଉନ୍ନତ ଆବେଗ ତତ୍କାଳୀନ ଯୁବ ସମାଜକୁ ଘାରିଥିଲା । ମାର୍କସ ଓ ଏଙ୍ଗେଲସ ଏହାର ବ୍ୟତିକ୍ରମ ନଥିଲେ । ତଥାପି ସେମାନଙ୍କର ମହତ୍ତ୍ୱ ପଣିଆ ଥିଲା ଚପଳ ଓ ଚଞ୍ଚଳ । ବାସ୍ତବତାକୁ ସଂଶୋଧନ କରିବାର ସମ୍ଭାବନାକୁ ସେମାନେ ଏକ ସହଜ କାମ ଭଳି ବିଚାରୁଥିଲେ । ସେମାନଙ୍କ ମନେ ହେଉଥିଲା ଯେପରିକି କେବଳ ଗାର ଟାଏ ଟାଣିଦେଲେ ତ୍ରୁଟିପୂର୍ଣ୍ଣ ବାସ୍ତବତା ଦୂର ହୋଇଯିବ ଏବଂ ଯାହା ହେବା ଉଚିତ ତାକୁ ତାହା ସ୍ଥାନରେ ଛିଡ଼ା କରି ଦେଇ ହେବ । ଏସବୁ ହେବ ନୂତନ, ଆଖି ଝଲସେଇ ଦେବାଭଳି ପରିଚ୍ଛନ୍ନ ଓ ମନୋରମ, ବିଶୁଦ୍ଧ ଓ ଚେତନାର ନୀଳିମ ଆକାଶରୁ ଏହା ଉଦ୍‌ଭବ ହୋଇଥିବ । ଏସବୁ ଭାବନା ଆସିଥିଲା ପ୍ରଧାନତଃ ଫରାସୀ (ରୁସୋ ଓ ହେଲଭେଟିଅସ) ଏବଂ ଜର୍ମାନ (କାଣ୍ଟ ଓ ଭନ୍ ଫିଶ) ଏନଲାଇଟନରମାନଙ୍କ ରଚନାବଳୀରୁ । ଏନଲାଇଟନମେଣ୍ଟର ଏହା ଥିଲା ବୈଶିଷ୍ଟ୍ୟ ସୂଚକ ପରମ୍ପରା : ସେମାନଙ୍କ ମତ ଅନୁସାରେ ଯାହାର ସ୍ଥିତି ଅଛି ତାହା ହେଉଛି ଯାହା ନାହିଁ ତାହାର ଗୋଟାଏ ପ୍ରକାରର ସମାପତନ, ଏକ ଐତିହାସିକ ଅସାମାନ୍ୟ ଘଟଣା, ଏକ ମାୟା, ସତ୍ୟକୁ ଉପଲବ୍‌ଧି କରିବା ଲାଗି ଜନସାଧାରଣଙ୍କ ଅକ୍ଷମତାର ତଥା ସତ୍ୟାନୁସରଣ ପୂର୍ବକ ନିଜର ଜୀବନଯାତ୍ରାକୁ ନିର୍ବାହ କରିବା ଲାଗି ସେମାନଙ୍କ ଅଯୋଗ୍ୟତାର ପରିଣତି । ଅଥବା, ସର୍ବଶେଷରେ ସାମାଜିକ ସୋପାନସମୂହର ସର୍ବୋଚ୍ଚ ସ୍ତରରେ ଥିବା ବ୍ୟକ୍ତି ବିଶେଷ କିମ୍ବା କେତେକ ବ୍ୟକ୍ତିଙ୍କର ଏକ ଗୋଷ୍ଠୀର ବିଦ୍ୱେଷମୂଳକ ଅଭିସନ୍ଧିରୁ ଏହା ଉଦ୍ଭବ ହୋଇଛି ।

ପ୍ରଗତିଶୀଳ ବିଚାରଧାରାର ଯୁବକମାନେ ଏକା ଗାରକେ ସଂପୂର୍ଣ୍ଣ ନୂତନ ବାସ୍ତବତା ସୃଷ୍ଟି ନିମନ୍ତେ ଜନ କୁଇକ୍‌ସ ଭଳି ଯେଉଁ କଳ୍ପନାପ୍ରବଣ ପ୍ରୟାସ ପ୍ରଥମେ

(୧) କାର୍ଲ ମାର୍କସ ଓ ଫ୍ରେଡରିକ ଏଙ୍ଗେଲ୍‌ସ—**ସଂଗୃହୀତ ଗ୍ରନ୍ଥାବଳୀ,** ଖଣ୍ଡ-୨, ପୃଷ୍ଠା-୪୨୨ ।

ପ୍ରଥମେ କରିଥିଲେ ତାହା ବିଫଳ ହେଲା । ତା'ର କାରଣ ବାସ୍ତବତା କାଳତାଳୀୟ ବା ସମାପତନ ନଥିଲା । ଐତିହାସିକ ବିକାଶର ପୂର୍ବତନ ସ୍ତରମାନଙ୍କର ଏହା ଥିଲା ଏକ ଯୁକ୍ତିସମ୍ମତ ପରିଣତି, ଆଉ ଜନସାଧାରଣଙ୍କ ଚେତନାରେ ତଥା ସ୍ୱାର୍ଥରେ ଏହା ନିବିଡ଼ଭାବେ ମଜ୍ଜି ରହିଥିଲା । "ମହତ୍" (ଅଥଚ ଚଳନ୍ତିଶକ୍ତି ବିହୀନ) ଆଦର୍ଶ ଆଉ "ହୀନ" (ଅଥଚ ଏକ ଦୃଢ଼ ଐତିହାସିକ ଭିତ୍ତି ଉପରେ ଆଧାରିତ) ବାସ୍ତବତା ମଧ୍ୟରେ ସଂଘାତ ସେମାନଙ୍କ ନିମନ୍ତେ ଏକ ଗମ୍ଭୀର ପରୀକ୍ଷା ଥିଲା ଏବଂ ସେମାନଙ୍କ ଜୀବନ ପଥରେ ଥିଲା ଏକ ବିଭାଜନ । ପ୍ରଥମ ଅବସ୍ଥାରୁ ହିଁ "ଖଣ୍ଡି ଆଖାବଡ଼ା" ହୋଇ ଏବଂ "କଚଡ଼ା" ଖାଇ, ଅନେକେ ଅଳ୍ପ ବୟସରୁ ହୁସିଆର ହୋଇଗଲେ ; ତରୁଣକାଳର ସ୍ୱପ୍ନକୁ ଭୁଲି-ଯିବାକୁ ବସିଲେ ; ଏବଂ "ହୀନ" ବାସ୍ତବତାର ଜୋରଦାର ଆବାଜକୁ ପୂରାପୂରି ମାନି ଚଳିଲେ—କାରଣ ସେଥିରେ ଥିଲା ବ୍ୟକ୍ତିଗତ ସ୍ୱାଚ୍ଛନ୍ଦ୍ୟ ଓ ସୁଖ ।

ମୌଳିକଭାବେ ଏକ ଭିନ୍ନ ପଥ ଗ୍ରହଣ କରିବା ତଥାପି ସମ୍ଭବପର ଥିଲା, ଯାହା ମାର୍କସ ଓ ଏଙ୍ଗେଲସ କଲେ । ଏହା ଅବଶ୍ୟ ସତ ଯେ ଦିଜଣଙ୍କ ଭିତରୁ କାହାରି ଜଣକ ପାଇଁ ହେଲେ ଏ ମାର୍ଗ ଗ୍ରହଣ କରିବା ସହଜସାଧ୍ୟ କାମ ନଥିଲା । ଏହା ପୂର୍ବରୁ ଏକ ଗୁରୁତର ମନସ୍ତାତ୍ତ୍ୱିକ ଓ ଆଦର୍ଶଗତ ସଙ୍କଟର ସମ୍ମୁଖୀନ ଉଭୟେ ହୋଇଥିଲେ : —"...ମୋର ପ୍ରଥମ ଟର୍ମରେ ମୁଁ ଅନେକ ବିନିଦ୍ର ରଜନୀ ଅତିବାହିତ କରିଛି, ବହୁ ସଂଘର୍ଷ କରିଛି ଏବଂ ଆଭ୍ୟନ୍ତରୀଣ ଓ ବାହ୍ୟ ଉତ୍ତେଜନା ବରଦାସ୍ତ କରିଛି ।" ମାର୍କସ ତାଙ୍କ ପିତାଙ୍କ ପାଖକୁ ଲେଖିଥିଲେ । "...ପ୍ରକୃତିକୁ, କଳାକୁ ଓ ଜଗତକୁ ମୁଁ ଅବହେଳା କରିଛି, ଆଉ ମୋ ବନ୍ଧୁମାନଙ୍କ ସହିତ ସମ୍ବନ୍ଧ ତୁଟାଇ ଦେଇଛି ।"(୧) ଆଉ ତାର ପ୍ରଥମ ଫଳ ଏହିପରି ହୋଇଛି । "ପରଦା ପଡ଼ିଯାଇଛି, ମୋର ସର୍ବାଧିକ ମାନ୍ୟ ବ୍ୟକ୍ତିମାନେ ବିଚ୍ଛିନ୍ନ ହୋଇ ଯାଇଛନ୍ତି, ଆଉ ନୂତନ ଦେବତାମାନଙ୍କୁ ଥାପିବାକୁ ହୋଇଛି ।(୨) କାଣ୍ଟ ଓ ଫିସେଙ୍କୁ ଛାଡ଼ି ମାର୍କସ ହେଗେଲଙ୍କୁ ଧରିଲେ । "କଣ ହେବା ଉଚିତ" ଏଇଭଳି ଏକ ସୁଦୂରପ୍ରସାରୀ ଅଲୌକିକ ଚିନ୍ତାଧାରା ତ୍ୟାଗ କରି "....ଖୋଦ ବାସ୍ତବତା ଭିତରେ ହିଁ ଚିନ୍ତାଧାରାକୁ ଅନ୍ୱେଷଣ କରିବା ସ୍ତରକୁ ଆସିଗଲେ ।"(୩)

---

(୧) କାର୍ଲ ମାର୍କସ ଓ ଫ୍ରେଡରିକ ଏଙ୍ଗେଲସ୍—**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୧, ପୃ-୧୭ ୧୮ ।

(୨) ଏଜ୍ଞ—ପୃ-୧୮ ।

(୩) ଏଜ୍ଞ ।

ବର୍ତ୍ତମାନ ମାର୍କସ ଯେଉଁ ମହାନ ଓ ବାସ୍ତବବାଦୀ ଲକ୍ଷ୍ୟ ସାଧନ ପାଇଁ ଆଉ ଦଣ୍ଡ ଖୋଜିବାରେ ବ୍ୟସ୍ତ ରହିଲେ ତାହା ହେଲ ବାସ୍ତବତାକୁ **ବାସ୍ତବତାରେ ହିଁ** ରୂପାନ୍ତରିତ କରିବା—"ଯଦି ଈଶ୍ୱରମାନେ ପୂର୍ବକାଳରେ ପୃଥିବୀର ଊର୍ଦ୍ଧ୍ୱରେ ରହୁଥିଲେ, ବର୍ତ୍ତମାନ ସେମାନେ ହୋଇଛନ୍ତି ତାର କେନ୍ଦ୍ର ବିନ୍ଦୁ।"(୧)

ମାତ୍ର ମାର୍କସ ଓ ଏଙ୍ଗେଲସ ଖୁବ ଶୀଘ୍ର ଜାଣି ପାରିଲେ ଯେ **ଯାହାର ସୃଷ୍ଟି ଅଛି ତାହାକୁ ଅବବୋଧ କରାଯାଇ ପାରିବ,** ଏହି ହେଗେଲୀୟ ମତ ଅନୁଯାୟୀ ବାସ୍ତବତାର ବିଶ୍ଳେଷଣ କରିବା ପଦ୍ଧତିରେ ଗୋଟିଏ ଗୁରୁତର ବିପଦ ରହିଛି। କୌଣସି ଐତିହାସିକ ପରିସ୍ଥିତିର କାରଣ ଅନୁସନ୍ଧାନ କରିବା ସମୟରେ (ଅତି ସବୁ ପରିସ୍ଥିତି, ତାହା ଯେତେ ଅନ୍ଧକାରମୟ ବା ନୈରାଶ୍ୟଜନକ ହେଲେ ସୁଦ୍ଧା ତାହାର କାରଣ ରହିଛି) ସଂଶ୍ଳିଷ୍ଟ ପରିସ୍ଥିତିକୁ ଓ ସଂଶ୍ଳିଷ୍ଟ ଘଟଣାକୁ ଜଣେ ସାବ୍ୟସ୍ତ କରିବା ଯାଏ ଯାଇପାରେ, ଆଉ ତାହା ସହିତ ସାଲିସ କରିପାରେ। ପରିତାପର ବିଷୟ ଯେ କଳ୍ପନା ପ୍ରବଣ ସ୍ୱପ୍ନରୁ ଗତି କରି ବାସ୍ତବତାର ଗମ୍ଭୀର ବିଶ୍ଳେଷଣ ଦିଗକୁ ଯିବାର ଉଲ୍ଲେଖନୀୟ ପ୍ରମାଣ ହେଗେଲୀୟ ଦର୍ଶନରେ ରହିଥିଲେ ସୁଦ୍ଧା, **ଯେ କୌଣସି** ବାସ୍ତବତା ସହିତ ସାଲିସ ବିରୋଧରେ ପ୍ରତିକାରର କୌଣସି ସୂଚନା ଦେବାରେ ତାହା ବ୍ୟର୍ଥ ହୋଇଯାଇ।

ହେଗେଲଙ୍କ ମତ ହେଲା ଯେ ପ୍ରତ୍ୟେକ ଜାତି ତା'ର ଯୋଗ୍ୟତା ଅନୁଯାୟୀ ସରକାର ପାଏ। ଅର୍ଥାତ ଯେ କୌଣସି ହେଗେଲ ମତବାଦୀ ଏହା ସୁସ୍ପଷ୍ଟଭାବେ ଦେଖେଇ ଦେଇ ପାରିବେ ଯେ କୌଣସି ସରକାର କାକତାଳୀୟ ନୁହେଁ। କୌଣସି ଏକ ନିର୍ଦ୍ଦିଷ୍ଟ ଜାତିର ବିକାଶର ସ୍ତରର ଉପଯୋଗୀ, ତାହାର ସଂସ୍କୃତି, ପ୍ରୟୋଜନୀୟତା ତଥା ସ୍ୱାର୍ଥର ଉପଯୋଗୀ ସରକାର ତାହା ପାଇଛି। ଗୋଟିଏ ସାମାଜିକ ଗଠନ ବିନ୍ୟାସର ସ୍ଥାନ ଆଉ ଗୋଟିଏ ଗଠନ ବିନ୍ୟାସ କେଉଁ କାରଣ ଯୋଗୁଁ ନିଏ, ତାହାର ସୂଚନା ହେଗେଲବାଦୀମାନେ ଅବଶ୍ୟ ଦେଇପାରି ନାହାନ୍ତି। ତେଣୁ କରି କୌଣସି ଜାତି କିପରି ଦାବୀ କରି ପାରିବ ଯେ ଏପରି ସରକାର ତାହା ପାଇବ ଯେଉଁଥି ପାଇଁ ତାହାର "ଯୋଗ୍ୟତା ନଥିବ", ଯେଉଁ ସରକାର କି ତାହାର ପ୍ରୟୋଜନୀୟତାଠାରୁ ଉଚ୍ଚତର ସ୍ତରରେ ରହିଥିବ, ତା'ର ଚେତନାର ଊର୍ଦ୍ଧ୍ୱରେ ରହିଥିବ? ଏହା କରିବା ଦ୍ୱାରା ହେଗେଲଙ୍କ ସମୟରେ ପ୍ରୁସିଆ ରାଜତନ୍ତ୍ରର ଯେଉଁ କଳଙ୍କ ଥିଲା ତାହା ସହିତ ସେ

(୧) ମାର୍କସ ଓ ଏଙ୍ଗେଲସ—**ସଂଗୃହୀତ ଗ୍ରନ୍ଥାବଳୀ,** ଖଣ୍ଡ-୧, ପୃ:-୧୭-୧୮।

ସାଲିସ କରନେଲେ, ଯେତେବେଳେ କି ତାଙ୍କର ଅନେକ ନବୀନ ଶିଷ୍ୟ ରକ୍ଷଣଶୀଳ ରାଜନୈତିକ ମତବାଦରେ ଅଟଳ ରହିଥିଲେ । ଅନେକ ଇଉରୋପୀୟ ଦେଶର ତରୁଣମାନେ ସାମାଜିକ ଅନ୍ୟାୟ ଅବିଚାରକୁ ମାନିନେବାକୁ ଚାହିଁ ନଥିଲେ ଏବଂ "ଯାହାର ସ୍ଥିତି ଅଛି ତାହାକୁ ଅବବୋଧ କରାଯାଇ ପାରିବ" ଏଇ ହେଗେଲୀୟ ମୌଳିକ ନୀତି ପ୍ରତି ଅନୁରକ୍ତ ରହିଥିଲେ । ସେମାନେ ଅନ୍ୱେଷଣ ଆରମ୍ଭ କରି ଦେଖିଲେ ଯେ "ଯାହାର ସ୍ଥିତି ଅଛି" ତାକୁ କାହିଁକି ହଟେଇ ଦିଆଯିବ ଏବଂ ତାର ସ୍ଥାନ କିଏ ଗ୍ରହଣ କରିବ, ଏ ପ୍ରସଙ୍ଗର ଯଥାର୍ଥ ଉତ୍ତର "ବାସ୍ତବତା ମଧ୍ୟରେ ହିଁ ରହିଛି ।" ଏ ଅନ୍ୱେଷଣ ନିମନ୍ତେ ସେମାନେ ହେଗେଲୀୟ ଦର୍ଶନର ଏକ ଦୁର୍ବଳ ପରିଣତି, ଏକ ତ୍ରୁଟି, ଅପୂର୍ଣ୍ଣତା ଖୋଜିଲେ । ଆଉ ମାର୍କସ ଓ ଏଙ୍ଗେଲସ ଉକ୍ତ ତ୍ରୁଟିକୁ ଦେଖେଇ ଦେଲେ—ତାହା ହେଲା ଆଦର୍ଶବାଦ ।

ବସ୍ତୁତଃପକ୍ଷେ, ହେଗେଲ ଏକ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର କରିଥିଲେ । ସେ ପ୍ରମାଣ କରିଥିଲେ ଯେ ମାନବଜାତିର ଇତିହାସ ଆକସ୍ମିକ ସ୍ୱତଃସ୍ଫୂର୍ତ୍ତ କ୍ରିୟାମାନଙ୍କର ଏକ ଚେନ ସରି ନୁହେଁ, ଏହା ହେଉଛି ଏକ ଆଇନ ପରିଚାଳିତ ପ୍ରକ୍ରିୟା ; ଏବଂ ବସ୍ତୁଗତ ବିଧିବିଧାନ, ନିୟମ ରହିଛି ଯାହା ଦୃଢ଼ତା ସହକାରେ ଓ ଅବିଶ୍ରାନ୍ତ ଭାବେ ନିଜର ଉପସ୍ଥିତି ଜାହିର କରୁଛି । ହେଲେ, ଏ ବିଧାନମାନଙ୍କର ଚରିତ୍ର କଣ ତାହା ଚିହ୍ନିବା ଓ ଚିହ୍ନାଇ ଦେବା ପାଇଁ ହେଗେଲ ସମର୍ଥ ହୋଇ ନ ଥିଲେ । ସେଥି ନିମନ୍ତେ ସେ ସ୍ୱୀକାରି ଥିଲେ ଯେ ଏକ ଶକ୍ତି ଅଛି, ଏକ ବିଶ୍ୱ ଅଭୀଷ୍ଟ ରହିଛି, କୌଣସି "ପ୍ରଜ୍ଞା" ରହିଛି, "ପରମ ଭାବ" ରହିଛି, ଯାହା ଐତିହାସିକ ପ୍ରକ୍ରିୟାକୁ ପରିଚାଳିତ କରୁଛି ଏବଂ ନିଜର ବିଧାନ ଏଠାରେ ଲାଗୁ କରିଛି । ହେଗେଲ କହିଥିଲେ ଯେ ମଣିଷର କର୍ତ୍ତବ୍ୟ ହେଉଛି ଇତିହାସକୁ ଅନୁଶୀଳନ କରିବା (ଯହିଁରେ ରହିଛି ଏଇ "ପରମ ଭାବ"ର ସାକାର ରୂପ), ଇତିହାସର "ଆବଶ୍ୟକତାଗୁଡ଼ିକୁ ଅବବୋଧ କରିବା, ସେଗୁଡ଼ିକ ସହିତ ନିଜକୁ ଖାପଖୁଆଇବା, ତଥା ଏଇ ସମସ୍ତ ଆବଶ୍ୟକତାର ଅନୁରୂପ କରି ନିଜର କ୍ରିୟାକଳାପକୁ ସଙ୍ଗଠିତ କରିବା ।

ହେଗେଲୀୟ ଦର୍ଶନରେ ଅନେକ କିଛି ରହିଛି ଯାହା ସହିତ ମାର୍କସ ଓ ଏଙ୍ଗେଲସ ଏକମତ ନ ଥିଲେ । ପ୍ରଥମତଃ ସେମାନେ ଏ ବିଷୟରେ ଏକମତ ନ ଥିଲେ ଯେ ବସ୍ତୁନିଷ୍ଠ ବିଧାନମାନ, ଯାହା "ପରମ ଭାବ"ର ପରିପ୍ରେକ୍ଷୀରେ ପ୍ରଣୀତ ହୋଇଛି ତାହାକୁ ପ୍ରମାଣ କରାଯାଇ ପାରିବ ମାନବ ଇତିହାସରେ ତାହା କେବଳ ଘଟି ସାରିଲା ପରେ । ତେଣୁ ହେଗେଲୀୟ ଦର୍ଶନର କେତେକ ଉପଯୋଗିତା ହେଉଛି ଏଇ ଯେ "ଅତୀତକୁ"

ଏଥିରୁ ବୁଝାଯାଇ ପାରିବ ଏବଂ "ଏପରି କାହିଁକି ଘଟିଲା" ତାହାର ଉତ୍ତର ମିଳି ପାରିବ । ମାତ୍ର ଭବିଷ୍ୟତକୁ ଦେଖିବା ନିମନ୍ତେ ଏବଂ କଣ ଓ କାହିଁକି ଘଟିବ ତାହାର ଭବିଷ୍ୟବାଣୀ କରିବାକୁ ଏହା ଅକ୍ଷମ ଥିଲା । ଏହା ଏକ ଦର୍ଶନ ଯାହାର କର୍ମକ୍ଷେତ୍ର ହେଲା ଅତୀତ, ଅଥଚ ପ୍ରଗତିକାମୀ ସାମାଜିକ ଶକ୍ତିମାନେ ଏପରି ଏକ ଦର୍ଶନ ଲୋଡ଼ନ୍ତି ଯାହା ଭବିଷ୍ୟତ ବିଷୟରେ ଚର୍ଚ୍ଚା କରିବ । ଦ୍ୱିତୀୟରେ, ହେଗେଲୀୟ ଦର୍ଶନରେ ବସ୍ତୁନିଷ୍ଠ ଐତିହାସିକ ବିଧାନଗୁଡ଼ିକର ଅସ୍ତିତ୍ୱ ବିଷୟ କେବଳମାତ୍ର **ଘୋଷଣା କରାଯାଇଥିଲା,** ମାତ୍ର ତାହାକୁ ବୁଝାଇବା ଲାଗି ଏହା ଅକ୍ଷମ ହୋଇଥିଲା, ଏ ବିଧାନ ଯେ ଐତିହାସିକ ବିକାଶର ଯୁକ୍ତିଧାରା ଶ୍ରେଷ୍ଠ ପ୍ରଜ୍ଞାର କ୍ଷେତ୍ରରେ ରଚିତ ହେଉଛି ଏବଂ ତଦନୁସାରୀ ହିଁ ଇତିହାସର ପ୍ରତ୍ୟେକ ଘଟଣା ଘଟୁଛି, ଅନ୍ୟଥା ନୁହେଁ, କାରଣ ଏହା ଘଟିବ ବୋଲି ପୂର୍ବରୁ ସ୍ଥିରୀକୃତ ହୋଇଛି (ଅର୍ଥାତ "ପରମ ଭାବ"ର ପରିପ୍ରେକ୍ଷୀରେ) । ଏସବୁ କିନ୍ତୁ ସନ୍ତୋଷଜନକ ନୁହେଁ । ଆଉ ତୃତୀୟତଃ, ମାର୍କସ ଓ ଏଙ୍ଗେଲ୍‌ସ ହେଗେଲୀୟ ଧାରଣାର **ଭାଗ୍ୟ-ବାଦିତା** ଗ୍ରହଣ କରି ପାରିଲେ ନାହିଁ ; ଏ ବିଚାର ଅନୁସାରେ ମଣିଷ ଗୋଟିଏ ନିଷ୍କ୍ରିୟ ଜୀବ ଯାହାର ଏକମାତ୍ର କର୍ତ୍ତବ୍ୟ ହେଲା ପରମ ଭାବର "ଆକାଂକ୍ଷା" କଣ ତାହା ବୁଝିବାକୁ ଚେଷ୍ଟିତ ହେବା, ତାହାର ପ୍ରୟୋଜନୀୟତା ସହିତ ନିଜକୁ ଖାପଖୁଆଇ ଚାଲିବା, ତାହାର ନିର୍ଦ୍ଦେଶ ପାଳନ କରିବା ଏବଂ ନିଜ ଭାଗ୍ୟ ଯାହା ହୋଇ ଥାଉ ପଛକେ ତାହା ପ୍ରତି ଅନୁଗତ ରହିବା ।

ତେଣୁ ଏହା ଆବଶ୍ୟକ ହେଲା ଯେ ଇତିହାସର ବସ୍ତୁନିଷ୍ଠ ଓ ବିଧାନ-ପରିଚାଳିତ ବିକାଶ ସମ୍ବନ୍ଧୀୟ ହେଗେଲୀୟ ଧାରଣାକୁ ଗ୍ରହଣ କରିବା ସାଙ୍ଗେ ସାଙ୍ଗେ ଆହୁରି ଏକ କାମ କରିବାକୁ ହେବ । ତାହା ହେଲା ବସ୍ତୁନିଷ୍ଠ ବିଧିବିଧାନର ପ୍ରକୃତ ଚରିତ୍ରକୁ ପ୍ରକଟ ଓ ବ୍ୟାଖ୍ୟା କରିବା, ତାହାର ରହିଥିବା ଚରିତ୍ରର ଏକ ଗମ୍ଭୀର ଓ ସମ୍ପୂର୍ଣ୍ଣ ବୈଜ୍ଞାନିକ ପ୍ରମାଣ ଯୋଗାଇଦେବା, ପୁଣି ଐତିହାସିକ ବିକାଶର ମାର୍ଗକୁ ସ୍ଥିର କରିବା କ୍ଷେତ୍ରରେ ମଣିଷର ପ୍ରକୃତ ସ୍ଥାନ କଣ ତାହା ସୂଚାଇବା ।

ଯେଉଁ ପୁସ୍ତକମାନଙ୍କରେ ମାର୍କସ ଏ ବିଷୟ ଆଲୋଚନା କରିଥିଲେ ତାହା ହେଲା **ହେଗେଲଙ୍କର ଆଇନ ସମ୍ପର୍କୀତ ଦର୍ଶନର ସମାଲୋଚନାରେ ଯୋଗଦାନ** (୧୮୪୩) **ଦର୍ଶନର ଦୈନ୍ୟ** (୧୮୪୭) ତଥା ଏଙ୍ଗେଲସଙ୍କ ସହିତ ମିଶି ସେ ଲେଖିଥିବା ପୁସ୍ତିକାବଳୀ । ସେଗୁଡ଼ିକ ହେଲା **ପାବନ ପରିବାର** (୧୮୪୫), **ଜର୍ମାନ**

**ଆଦର୍ଶବାଦ** (୧୮୪୫-୦୬), ଏବଂ ଶେଷରେ **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର**(୧) ଯେଉଁଥିରେ ବିଜ୍ଞାନ ତଥା ଖୋଦ୍ ଜୀବନ ଦ୍ୱାରା ଉତ୍ଥାପିତ ହୋଇଥିବା ସମସ୍ୟାବଳୀର ନିର୍ଦ୍ଦିଷ୍ଟ ଉତ୍ତର ଦିଆଯାଇଥିଲା ।

---

(୧) ୧୮୪୭ ଡିସେମ୍ବରରୁ ୧୮୪୮ ଜାନୁଆରୀ ଯାଏଁ ଦୁଇମାସ ଭିତରେ ମାର୍କ୍ସ ଓ ଏଙ୍ଗେଲ୍ସ **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର** ରଚନା କରିଥିଲେ । ୧୮୦୦ ଦଶକର ପ୍ରଥମାର୍ଦ୍ଧ ଏପରି ଏକ ସମୟ ଥିଲା ଯେତେବେଳେକି ବୁର୍ଜୁଆ-ଗଣତାନ୍ତ୍ରିକ ଆନ୍ଦୋଳନ ଇଉରୋପରେ ଅଗ୍ରଗତି କରୁଥିଲା ଏବଂ ସର୍ବହରା ଏଥିରେ ଅଧିକରୁ ଅଧିକ ମାତ୍ରାରେ ଅଂଶ ଗ୍ରହଣ କରୁଥିଲା । ଶ୍ରମିକମାନଙ୍କର ସଙ୍ଗଠନସମୂହ, ଗୁପ୍ତ ସମିତି ଓ ଗୋଷ୍ଠୀ କ୍ଲବମାନ ଗଢି ଉଠୁଥିଲା । ସନ୍ଦିଗ୍ଧ କର୍ମର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ସେମାନଙ୍କର ନ ଥିଲା । ଇଉଟୋପୀୟ ଓ ପେଟି ବୁର୍ଜୁଆ ସମାଜବାଦୀମାନଙ୍କର ଚିନ୍ତାଧାରା ଦ୍ୱାରା ସେମାନେ ପ୍ରଭାବିତ ହେଉଥିଲେ । ସେମାନଙ୍କର ବୃହତ୍ତମ ସଙ୍ଗଠନମାନଙ୍କ ମଧ୍ୟରୁ ଗୋଟିଏ, ଯାହାର ଶାଖାମାନ ଅନେକଗୁଡ଼ିଏ ଦେଶରେ ରହିଥିଲା ତାହା ହେଲା **ଲିଗ ଅଫ ଦି ଜଷ୍ଟ**—ସମଦର୍ଶୀମାନଙ୍କ ସଂସ୍ଥା ; **"ସବୁ ମଣିଷ ଭାଇ ଭାଇ"**—ଏଇଆ ଥିଲା ତାର ଆଦର୍ଶବାଣୀ, ଏବଂ ତାହାର ସଦସ୍ୟ-ମାନେ 'ନିଜର ପ୍ରତିବେଶୀ ପ୍ରତି ପ୍ରେମଭାବନା' ଓ ସମାନତା ଓ ନ୍ୟାୟପରାୟଣତା ପ୍ରଚାର କରୁଥିଲେ ।

୧୮୪୭ ପ୍ରାରମ୍ଭରେ ମାର୍କସ ଓ ଏଙ୍ଗେଲ୍ସ ସମଦର୍ଶୀମାନଙ୍କର ଏଇ ଲିଗରେ ଯୋଗ ଦେଲେ ଏବଂ ତାହାର ସଙ୍ଗଠନ କାର୍ଯ୍ୟରେ ଭାଗ ନେଲେ । ଉକ୍ତ ଲିଗର ପ୍ରଥମ କଂଗ୍ରେସ ଯାହା ଲଣ୍ଡନରେ ବସିଥିଲା ତହିଁରେ ଏହାର ନାମ ବଦଳାଇ **କମ୍ୟୁନିଷ୍ଟ ଲିଗ** କରିବାର ଏକ ପ୍ରସ୍ତାବ ଗୃହୀତ ହେଲା । ପୁରାତନ ମୂଳମନ୍ତ୍ର ସ୍ଥାନରେ ନୂଆ ମୂଳମନ୍ତ୍ର, ନୂତନ ଆଦର୍ଶବାଣୀ ହେଲା, **"ସବୁ ଦେଶର ଶ୍ରମଜୀବୀ ମଣିଷ, ଏକଜୁଟ ହୁଅ !"** କମ୍ୟୁନିଷ୍ଟ ଲିଗର ସ୍ଥାପନା ଥିଲା ମାର୍କସବାଦ ଓ ଶ୍ରମିକ ଶ୍ରେଣୀର ଆନ୍ଦୋଳନ ଭିତରେ ମିଶ୍ରଣର ପ୍ରଥମ ପଦକ୍ଷେପ । **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର** ପ୍ରସ୍ତୁତ କରିବାର ଦାୟିତ୍ୱ ମାର୍କସ ଓ ଏଙ୍ଗେଲ୍ସଙ୍କ ଉପରେ ଅର୍ପଣ କରାଯାଇଥିଲା ଯେପରିକି କମ୍ୟୁନିଷ୍ଟମାନଙ୍କର ଗୋଟାଏ କାର୍ଯ୍ୟକ୍ରମ ରହିବ ।

"କମ୍ୟୁନିଷ୍ଟମାନଙ୍କର 'ତାତ୍ତ୍ୱିକ ନିର୍ଦ୍ଧାରଣସମୂହ ବିଶ୍ୱ ଜଗିନ କୌଣସି ନା କୌଣସି ଜଣେ ଭାବୀ ସଂସ୍କାରକଙ୍କ ଦ୍ୱାରା ଉଦ୍ଭାବିତ ବା ଆବିଷ୍କୃତ ହୋଇଥିବା ଭାବନା ବା ନୀତି ଉପରେ ଆଧାରିତ ନୁହେଁ।" **ଇସ୍ତାହାରର** ରଚୟିତାମାନେ ଏହା ଲେଖିଥିଲେ।

ଏହା ପ୍ରଚଳିତ ଶ୍ରେଣୀ ସଂଗ୍ରାମ ଭିତରୁ, ଆମ ଆଖି ସାମନାରେ ଘଟି ଯାଉଥିବା ଏକ ଐତିହାସିକ ଆନ୍ଦୋଳନ ଭିତରୁ ଉଦ୍ଭବ ହୋଇଥିବା ବାସ୍ତବ ସଂପର୍କଗୁଡ଼ିକର ସାଧାରଣ ଭାବରେ ଏକ ପରିପ୍ରକାଶ ମାତ୍ର।"(୧) ସବୁଠାରୁ ପ୍ରଧାନ କଥା ହେଲା ଏଇ ଯେ ଏହି ଐତିହାସିକ ଆନ୍ଦୋଳନ ଭାବର ପରିବର୍ତ୍ତନ ନଥିଲା, କି ଧର୍ମ ବା ବିଶ୍ୱାସର ପରିବର୍ତ୍ତନ ନଥିଲା। କିନ୍ତୁ ଏହା ଥିଲା "ପ୍ରଚଳିତ ସଂପଦ ସଂପର୍କର ଉଚ୍ଛେଦ"(୨), କାରଣ "...ମଣିଷର ବିଗ୍ରହ, ମତାମତ ଓ କଳ୍ପନା, ଏକ କଥାରେ ମଣିଷର ଚେତନା ଶକ୍ତି ତାର ଭୌତିକ ସ୍ଥିତିର ପ୍ରତ୍ୟେକ ପରିବର୍ତ୍ତନ ସହିତ ପରିବର୍ତ୍ତିତ ହୁଏ, ତାର ସାମାଜିକ ସମ୍ପର୍କ ତଥା ତାର ସାମାଜିକ ଜୀବନରେ ପରିବର୍ତ୍ତନ ଆସେ"।(୩)

ଠିକ୍ ଏହା ହିଁ ହେଉଛି "ଇତିହାସର ବସ୍ତୁବାଦୀ ଅବବୋଧ"—**ଐତିହାସିକ ବସ୍ତୁବାଦ**: "ମହାନ" ଅଥବା "ସାଧାରଣ" ଲୋକମାନଙ୍କର ରଙ୍ଗୀନ ସ୍ୱପ୍ନ କେବେ ଇତିହାସ ରଚନା କରେ ନାହିଁ କି ସର୍ଜନା କରେ ନାହିଁ, ଆଉ ହେଗେଲୀୟ ଅତି ପ୍ରାକୃତ "ଆତ୍ମା" ତାହାକୁ ନିୟନ୍ତ୍ରଣ କରେ ନାହିଁ। ଐତିହାସିକ ବିକାଶର ମୂଳ କାରଣ ହେଉଛି ବେଶ ପାର୍ଥିବ, ଆଉ ତାହା ସାମାଜିକ ଅସ୍ତିତ୍ୱର ବାସ୍ତବ ଦ୍ୱନ୍ଦ୍ୱ (ଉତ୍ପାଦନର ପ୍ରକ୍ରିୟା ଓ ସମ୍ପଦ ସମ୍ପର୍କ) ଯାହାର ସମାଧାନ ନିମନ୍ତେ ପ୍ରୟୋଜନ ହେଉଛି ପ୍ରଚଳିତ ସମାଜ ବ୍ୟବସ୍ଥାର ପରିବର୍ତ୍ତନ। ସେଥି ନିମନ୍ତେ ମଣିଷ ଯେଉଁ କର୍ତ୍ତବ୍ୟର ସମ୍ମୁଖୀନ ହୋଇଛି ତାହା ହେଲା "ଯାହାର ସ୍ଥିତି ଅଛି" ତାହାକୁ ଏବଂ ସେଇ ଦ୍ୱନ୍ଦ୍ୱର କାର୍ଯ୍ୟାସକୁ ଉପଲବ୍ଧି କରିବା, ପୁଣି ଇତିହାସର ଗୋଟିଏ ବିନ୍ଦୁରେ, ଗୋଟିଏ ପଟରେ ଉତ୍ପାଦନ ସମ୍ପର୍କ ଓ ସାମାଜିକ ସଙ୍ଗଠନ, ଏବଂ ଅନ୍ୟ ପଟରେ ଉତ୍ପାଦିକା ଶକ୍ତି ମଧ୍ୟରେ ଯେଉଁ ଅନୈକ୍ୟ ରହିଛି ତାହାକୁ ଉପଲବ୍ଧି କରିବା। ଏ ଅନୈକ୍ୟକୁ ଦୂର କରିବା ନିମିତ୍ତ ଏବଂ ସମ୍ପଦ ସମ୍ପର୍କର ଏକ ନୂତନ

---

(୧) କାର୍ଲ ମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ—**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୬, ପୃ:-୪୯୮।

(୨) ଏକନ୍ନ ଖଣ୍ଡ-୬, ପୃ:-୪୯୮।

(୩) ଏକନ୍ନ-ପୃ: ୫୦୩।

ପ୍ରଥା ଓ ଏକ ନୂତନ ସମାଜ ବ୍ୟବସ୍ଥା ପ୍ରଚଳନ ନିମନ୍ତେ କଣ କରିବାକୁ ହେବ ତାହା ଅନୁଭବ କରିବା ଏକାନ୍ତ ପ୍ରୟୋଜନ । ଐତିହାସିକ ବସ୍ତୁବାଦ ପ୍ରଣାଳୀର ଅନ୍ୟ ଏକ ଦିଗକୁ ବିଶଦଭାବେ ବ୍ୟାଖ୍ୟା କରିବାର ପ୍ରୟୋଜନୀୟତା ଏଠାରେ ଉଦ୍ଭବ ହେଉଛି— ଜନସାଧାରଣଙ୍କ ଭୂମିକାର ସ୍ପଷ୍ଟୀକରଣ, ମନୁଷ୍ୟର ଚେତନା ଶକ୍ତି ତଥା ସାମାଜିକ ବିକାଶ କ୍ଷେତ୍ରରେ ତା'ର କ୍ରିୟାକଳାପ ସମ୍ପର୍କରେ ଜ୍ଞାନ । **ଇସ୍ତାହାରର** ରଚୟିତା-ମାନେ ଏ ପ୍ରଶ୍ନର ମଧ୍ୟ ଉତ୍ତର ପ୍ରଦାନ କରିଥିଲେ । ତାହା କ'ଣ ?

୧୮୪୦ ଦଶକର ମଧ୍ୟଭାଗରେ **ଇସ୍ତାହାରର** ରଚନା କାଳରେ ଐତିହାସିକ ବିକାଶ କ୍ଷେତ୍ରରେ ଜନସାଧାରଣଙ୍କ ଭୂମିକା ସମ୍ପର୍କିତ ପରସ୍ପର ଠାରୁ ମୌଳିକଭାବେ ପୃଥକ୍ ତିନୋଟି ଧାରଣାର ଉଦ୍ଭବ ହୋଇଥିଲା । ସେଇ ତିନୋଟି ଧାରଣାର ସଙ୍ଗତି ରହିଥିଲା ପୁଞ୍ଜିବାଦୀ ସମାଜର ତିନୋଟି ମୌଳିକ ଶକ୍ତି ସହିତ । ପ୍ରତ୍ୟେକ ଅନ୍ତର୍ଦଳଗତ ସଂଗ୍ରାମ ମଧ୍ୟ ଦେଇ ଉକ୍ତ ଧାରଣାମାନ ଜନ୍ମଲାଭ କରିଥିଲା ଏବଂ ଭବିଷ୍ୟତରେ ଅଧିକ ଅନେକ ସଙ୍ଗୀନ ସାମାଜିକ ସଂଘର୍ଷ ମଧ୍ୟଦେଇ ସେଗୁଡ଼ିକୁ ଗଢ଼ କରିବାକୁ ହୋଇଥିଲା । ପ୍ରଥମଟି ହେଲା **ପେଟି ବୁର୍ଜୁଆ ବିପ୍ଳବବାଦର, ଆତ୍ମନିଷ୍ଠ** ସ୍ୱେଚ୍ଛାବାଦୀ ଧାରଣା । ଦ୍ୱିତୀୟଟି ହେଲା **କମ୍ୟୁନିଷ୍ଟ**, ଭାଗ୍ୟବାଦୀ **ଦକ୍ଷିଣପନ୍ଥୀ-ସଂସ୍କାରବାଦୀ** ଧାରଣା ଯାହା ପ୍ରଥମେ ହେଗେଲୀୟ ଦ୍ୱନ୍ଦ୍ୱବାଦ ଓ ପରେ ମାର୍କସବାଦୀ ବିଚାରର ସ୍ଥୂଳ ବ୍ୟାଖ୍ୟା ଉପରେ ଆଧାରିତ ଥିଲା । ତୃତୀୟଟି ହେଲା **ମାର୍କସବାଦୀ, ସର୍ବହରାବାଦୀ, ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦୀ** ଧାରଣା ।

ପିଏରେ ଜୋଶେଫ ପ୍ରୋଧୋଁ ଥିଲେ ବାମପନ୍ଥୀ ପେଟି ବୁର୍ଜୁଆ ବୈପ୍ଳବିକ ଆନ୍ଦୋଳନର ନେତା । ତାଙ୍କର ନାମାନୁସାରେ ନାମକରଣ ହୋଇଥିବା ପ୍ରୋଧୋବାଦ ଥିଲା ଉପରୋକ୍ତ ଆନ୍ଦୋଳନରେ ପ୍ରାରମ୍ଭିକ ସମସ୍ୟର ଅନ୍ୟତମ ତତ୍ତ୍ୱ । ତିନୋଟି ପୃଥକ ମତବାଦ ମଧ୍ୟରେ ଏହା ଥିଲା ପ୍ରଥମ । ସାମାଜିକ ଦ୍ୱନ୍ଦ୍ୱର ନିର୍ଯ୍ୟାସ ଏବଂ ତାହାକୁ ସମାଧାନ କରିବାର ଉପାୟ ନେଇ ସେ ଯେଉଁ ବ୍ୟାଖ୍ୟା ଦିଏ ତାହା ହେଲା ଏଇ । ପ୍ରତ୍ୟେକ ଐତିହାସିକ ପ୍ରପଞ୍ଚର ଗୋଟିଏ "ଭଲ" ଦିଗ ଅଛି ଏବଂ ଆଉ ଗୋଟିଏ "ମନ୍ଦ" ଦିଗ ରହିଛି । "ଭଲ" ଦିଗଟି ହେଲା ପୁଞ୍ଜିବାଦ ଦ୍ୱାରା ଶ୍ରମର ଉତ୍ପାଦିକା ଶକ୍ତିର ଓ ସମ୍ପଦର ଦ୍ରୁତ ବୃଦ୍ଧି ସାଧନ, ପଣ୍ୟର ମାଲିକ ହିସାବରେ ଜନସାଧାରଣଙ୍କ ଭିତରେ "ସମାନତା" । ପଣ୍ୟର ଏହି ମାଲିକ, ଦ୍ରବ୍ୟ ମୂଲ୍ୟର ବିଧାନ ଅନୁସରଣ କରି ସମାନ-ଭାବେ ପଣ୍ୟ ବିନିମୟ କରେ । ଆଉ "ମନ୍ଦ" ଦିଗଟି ହେଲା ଏଇ ଯେ ପୁଞ୍ଜିବାଦ

ସଂଖ୍ୟାଗରିଷ୍ଠ ଶ୍ରମଜୀବୀ ଜନତାଙ୍କୁ ଶୋଷଣ କରେ, ଶ୍ରମିକ ଯାହା ଉତ୍ପାଦନ କରେ ତା'ର ଗୋଟାଏ ଅଂଶରୁ ଏହା ଶ୍ରମିକକୁ ବଞ୍ଚିତ କରେ, ଶ୍ରମ ଓ ପୁଞ୍ଜି ଭିତରେ କାର୍ଯ୍ୟତଃ ଗୋଟାଏ ପ୍ରକାରର ଅସମ ବିନିମୟ ଚାଲେ ଯାହା ମୁନାଫା ରୂପରେ ଅଥବା ଉଦ୍‌ବୃତ୍ତ ମୂଲ୍ୟର ବିଧାନରେ ଆତ୍ମ ପ୍ରକାଶ କରେ । ଏଇ ଦୃଷ୍ଟିରୁ ମୁକ୍ତି ଲାଭ ନିମନ୍ତେ "ମନ୍ଦ" ଦିଗକୁ ଯେତେ ଶୀଘ୍ର ସମ୍ଭବ ଦୂର କରିବା ସଙ୍ଗେ ସଙ୍ଗେ "ଭଲ" ଦିଗକୁ ରକ୍ଷା କରିବା ଏକାନ୍ତ ଅପରିହାର୍ଯ୍ୟ ।

ଏଗୁଡ଼ିକ ବେଶ ପ୍ରଶଂସନୀୟ ଓ ମାନବତାବାଦୀ ଚିନ୍ତା । ହେଲେ, ଏକ ପ୍ରକାର ନିରର୍ଥକ । କାରଣ, ପୁଞ୍ଜିବାଦର "ଭଲ" ଦିଗଟି (ଉତ୍ପାଦନର ଓ ଉତ୍ପାଦିକା ଶକ୍ତିର ବିକାଶ) ତାର "ମନ୍ଦ" ଦିଗର (ଶ୍ରମିକକୁ ଉତ୍ପାଦନର ଉପାୟ ଉପକରଣଠାରୁ ବିଚ୍ଛିନ୍ନ କରିବା) ପ୍ରତ୍ୟକ୍ଷ ପରିଣାମ । ଅନ୍ୟ ପକ୍ଷରେ "ମନ୍ଦ" ଦିଗଟି (ଉଦ୍‌ବୃତ୍ତ ମୂଲ୍ୟର ବିଧାନ) ଅନିବାର୍ଯ୍ୟଭାବେ "ଭଲ" ଦିଗର ବିକାଶ ଯୋଗୁଁ (ସାଧାରଣ ପଣ୍ୟ ଉତ୍ପାଦନ ଏବଂ ମୂଲ୍ୟର ବିଧାନ ଅନୁସରଣରେ ସମାନ ବିନିମୟ) ଅବଶ୍ୟମ୍ଭାବୀଭାବେ ସୃଷ୍ଟି ହୋଇଥାଏ ।

ପ୍ରୋଧୋଁଙ୍କ ଯୁକ୍ତି ଉପରେ ମନ୍ତବ୍ୟ ଦେଇ ମାର୍କସ କହିଥିଲେ, "ମନ୍ଦ ଦିଗକୁ ପରିହାର କରିବାର ସମସ୍ୟାକୁ ଯେପରି ଉପସ୍ଥାପନ କରାଯାଉଛି ତାହା ହିଁ ଦ୍ୱନ୍ଦ୍ୱାତ୍ମକ ଅଗ୍ରଗତିକୁ ନାକଚ କରି ଦେଉଛି ।"(୧) କାର୍ଯ୍ୟ କ୍ଷେତ୍ରରେ "ମନ୍ଦ" ଦିଗକୁ ଦୂର କରିବାକୁ ଗଲାବେଳେ "ଭଲ" ଦିଗଟିକୁ ଦୂର କରିବା ସାଙ୍ଗରେ ସମାନ ହେବ, ଅର୍ଥାତ୍ ସାମଗ୍ରିକଭାବେ ଐତିହାସିକ ବିକାଶକୁ ହିଁ ପରିହାର କରାଯିବ । ପ୍ରୋଧୋଁପନ୍ଥୀମାନେ ବିଶ୍ୱାସ କରୁଥିଲେ ଯେ ଏକ ନିର୍ଦ୍ଦିଷ୍ଟ ସମାଜ ବ୍ୟବସ୍ଥାକୁ ରକ୍ଷା କରାଯିବା ଉଚିତ । ତାର ଦୁର୍ବଳତାଗୁଡ଼ିକୁ କୌଣସି କୌଶଳ ପ୍ରୟୋଗ କରି ହଟେଇ ଦେବା ପରେ, ପ୍ରଚଳିତ ସମାଜର ପ୍ରଣାଳୀକୁ ରକ୍ଷା କରିବାକୁ ସେମାନେ ଚାହୁଁଥିଲେ, ମାତ୍ର ସେ ପ୍ରଣାଳୀରେ ଅନ୍ତର୍ନିହିତ ରହିଛି ଯେଉ ସଂଗ୍ରାମ ଓ ବିପଦ ତାହା ସେମାନେ ଚାହୁଁ ନଥିଲେ । ଆଧୁନିକ ସମାଜର ସୁରକ୍ଷା ସେମାନେ ଚାହୁଁଥିଲେ, ମାତ୍ର ଯେଉଁ ଉପାଦାନ-ଗୁଡ଼ିକ ସେ ସମାଜରେ ବୈପ୍ଳବିକ ପରିବର୍ତ୍ତନ ଆଣୁଥିଲା ଓ ତାହାକୁ କ୍ଷୟ କରୁଥିଲା

---

(୧) କାର୍ଲ ମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ—**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୬ ପୃ: ୧୬୮ ।

ସେଗୁଡ଼ିକୁ ସେମାନେ ଗ୍ରହଣ ନଥିଲେ । **ଇସ୍ତାହାର**ର ରଚୟିତାମାନେ ବିଦ୍ରୂପ କରି ଲେଖିଲେ, "ସର୍ବହରାଙ୍କୁ ବାଦ ଦେଇ ସେମାନେ ବୁର୍ଜୁଆଙ୍କୁ ରକ୍ଷିବା ନିମନ୍ତେ ଅଗ୍ରଣୀ ଥିଲେ ।"(୧)

ଅବଶ୍ୟ ପେଟି-ବୁର୍ଜୁଆମାନେ (ଏବଂ ସେମାନଙ୍କର ତାତ୍ତ୍ୱିକମାନେ) ଇତିହାସର ଧାରାକୁ ଉଲଟାଇ ଦେବା ଅବସ୍ଥାରେ ନାହାନ୍ତି (ଏହା ଠିକ୍ ଯେ ସେମାନେ ଏହା ଗ୍ରହଣ ନଥିଲେ) । ମାତ୍ର ସେମାନଙ୍କ ତତ୍ତ୍ୱ ପ୍ରଧାନତଃ ସାମାଜିକ ବିକାଶର ଧାରାକୁ ଦୁର୍ବଳ କରୁଥିଲା, ବର୍ତ୍ତମାନ ଠାରୁ ଏହାକୁ ଅତୀତକୁ ନେଇ ଯାଉଥିଲା, ଉଦ୍‌ବୃତ୍ତ ମୂଲ୍ୟର "ମନ୍ଦ" ବିଧାନ ଉପରେ ଆଧାରିତ ଅଧିକ ପରିମାଣରେ ପୁଞ୍ଜିବାଦୀ ଉତ୍ପାଦନରୁ ମୂଲ୍ୟର "ଭଲ" ବିଧାନ ଉପରେ ଆଧାରିତ ସାଧାରଣ ପଣ୍ୟ ବିନିମୟ ଓ ସମାନ କିସମ ଦ୍ରବ୍ୟର ବିନିମୟକୁ, ସାମାଜିକୀକରଣ ହୋଇଥିବା ଓ ଉଚ୍ଚ ମାତ୍ରାରେ ଉତ୍ପାଦନଶୀଳ ଭଡ଼ାକରା ଶ୍ରମରୁ କ୍ଷୁଦ୍ର ମାଲିକମାନଙ୍କର ବେଶ କମ ଉତ୍ପାଦନଶୀଳ ଶ୍ରମକୁ ଏହା ନେଇ ଯାଉଥିଲା । ବାସ୍ତବରେ ବିଚାର କଲେ ଏହି "ମହତ୍" ଓ "ମାନବତାବାଦୀ" ତତ୍ତ୍ୱ ପ୍ରକୃତ ଅର୍ଥରେ ଥିଲା ରକ୍ଷଣଶୀଳ ଓ ପ୍ରତିକ୍ରିୟାବାଦୀ ।

ଏ ଧାରଣାର ଅନ୍ୟ ଏକ ସମସ୍ୟା ହେଲା "ମନ୍ଦ" ଓ "ଭଲ" ଭିତରେ ଥିବା ପ୍ରଭେଦକୁ ଚିହ୍ନିବାର ଆବଶ୍ୟକତା । ଏହା ବିଚାର କରିବା ନିମନ୍ତେ ପ୍ରୋଧୋବାଦୀ ମତବାଦରେ ଗୋଟାଏ ମାନଦଣ୍ଡ ରଖାଯାଇଛି ବୋଲି ବିଶ୍ୱାସ କରାଯାଉଥିଲା ଏବଂ କେଉଁ ନିର୍ଦ୍ଦିଷ୍ଟ ସାମାଜିକ ଶକ୍ତି "ମନ୍ଦ"କୁ ନିପାତ କରିବା କାର୍ଯ୍ୟରେ ଅଗ୍ରସର ହେବ ତାହା ସେମାନେ କହୁଥିଲେ । ମାନଦଣ୍ଡ ବିଷୟରେ କୁହାଯାଇପାରେ ଯେ ପେଟି ବୁର୍ଜୁଆ ସମାଜବାଦୀମାନଙ୍କର ବିବିଧ ପ୍ରକାରର ଚିନ୍ତାଧାରା ରହିଛି : କେତେକ "ମଣିଷର ଅପରିବର୍ତ୍ତନୀୟ ଚରିତ୍ର" ବିଷୟ ଉଲ୍ଲେଖ କରୁଥିଲେ, ଅନ୍ୟମାନେ ନୈତିକତା ଓ ନ୍ୟାୟର ଚିରନ୍ତନ ବିଧି କଥା କହୁଥିଲେ । ସମାନତାକୁ ଏକ ପୂରାପୂରି ବୁର୍ଜୁଆ ଅର୍ଥରେ ବ୍ୟବହାର କରାଯାଉଥିଲା—ଯେପରିକି ଘରୋଇ ସମ୍ପତ୍ତିର ମାଲିକମାନଙ୍କର ସମାନତା । ସବୁ ବିଚାର ମୂଳତଃ ଥିଲା ସମାନ, ଯେହେତୁ ପରମ ପାଇଁ, ଇତିହାସରେ "ମନ୍ଦ" ଓ "ଭଲ" ପାଇଁ ଚିରନ୍ତନ ମାନଦଣ୍ଡ ଖୋଜିବା ଆତ୍ମନିଷ୍ଠ ଓ ମନମୁଖୀ ଭିନ୍ନ ଆଉ କିଛି ହୋଇ

(୧) କାର୍ଲ ମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ—
**ସଂଗୃହୀତ ଗ୍ରନ୍ଥାବଳୀ,** ଖଣ୍ଡ-୬, ପୃ: ୧୬୮ ।

ନପାରେ, କାରଣ ଏହାର ଚରିତ୍ର ହେଉଛି ଅଣ-ଐତିହାସିକ । ଆଉ ଏଭଳି ଏକ ଆତ୍ମମୁଖ୍ୟ ରଖିବାର ଅର୍ଥ ଏପରି ଧାରଣା କରିବା ଯେ ଇତିହାସରେ "ମନ୍ଦ"ର ସଂଜ୍ଞା ନିରୂପଣ କରିବା ଓ ତାହାକୁ ବିଲୋପ କରିବା ଅନ୍ୟ ଜଣକର ଦାୟିତ୍ୱ ଯିଏ ଥିବ "ଇତିହାସର ଊର୍ଦ୍ଧ୍ୱରେ," ଯିଏ କି କୌଣସି ନିର୍ଦ୍ଦିଷ୍ଟ ଐତିହାସିକ ପରିସ୍ଥିତିର ପ୍ରଭାବରୁ ମୁକ୍ତ ଏକ "ସାମାଜିକ ପ୍ରତିଭା" ହୋଇଥିବ ।

ଏହିପରିଭାବେ, ପେଟି-ବୁର୍ଜୁଆ ବୈପ୍ଳବିକ ଆନ୍ଦୋଳନ, ପ୍ରଥମେ ପ୍ରଥମେ ଯାହା ଇତିହାସ ଗଢ଼ିବାର କ୍ଷମତା ସମ୍ପନ୍ନ ମଣିଷର ଜୟଗାନ କରିଥିଲା, ଏବଂ ଲୋଭନୀୟ "ଅତିମାନବୀୟ" ସ୍ଲୋଗାନ ବାହାର କରିଥିଲା ଯେ **"ମଣିଷ ହେଉଛି ଇତିହାସର ନିର୍ମାତା"** ତାହାର "ପ୍ରଣେତାମାନେ" ନିଜ ନିଜ ତତ୍ତ୍ୱ ସପକ୍ଷରେ ଏକପ୍ରକାର କହିବାକୁ ଲାଗିଲେ ଯେ ସବୁ ମଣିଷ ଇତିହାସରର ନିର୍ମାତା ନୁହନ୍ତି—ଯେଉଁମାନେ ଇତିହାସ ଓ ବାସ୍ତବତାର **ଊର୍ଦ୍ଧ୍ୱରେ** ରହିଛନ୍ତି ସେଇମାନେ ହିଁ, ସାମାଜିକ ପ୍ରତିଭାବାନ ଲୋକେ, ନେତାମାନେ ଓ ବୀରପୁରୁଷମାନେ ହିଁ କେବଳ ଇତିହାସ ଗଢ଼ି ପାଇବେ । ସେଥିପାଇଁ ଆମ ସାମନାରେ ଆଜି ଏପରି ଏକ ତତ୍ତ୍ୱ ରହିଛି ଯାହା ମୂଳତଃ ଛଦ୍ମ-ବୈପ୍ଳବିକ ଓ ଛଦ୍ମ-ମାନବୀୟ । ଏହା ହେଉଛି ଗଣତନ୍ତ୍ର-ବିରୋଧୀ, ବୋନାପାର୍ଟସୁଲଭ କୁଳୀନ ତତ୍ତ୍ୱ, ଓଲଟ ପାଲଟ ହୋଇ ଯାଇଥିବା ଏକ ବୁର୍ଜୁଆ ତତ୍ତ୍ୱ ।

ଆପାତ ଦୃଷ୍ଟିରେ ବିରୋଧୀ ବସ୍ତୁନିଷ୍ଠ ଧାରଣାର ଅନୁଗାମୀମାନେ ଆତ୍ମନିଷ୍ଠମାନଙ୍କ ବିରୁଦ୍ଧରେ ପ୍ରବଳଭାବରେ ଯୁକ୍ତିତର୍କ ଉପସ୍ଥାପନ କରିଥିଲେ (ଏବେ ମଧ୍ୟ କରୁଛନ୍ତି) । ସେମାନେ ନ୍ୟାଯ୍ୟଭାବେ ଏହା କହନ୍ତି ଯେ ଦ୍ୱନ୍ଦ୍ୱ ଏକ ବ୍ୟତିକ୍ରମ ନୁହେଁ ଯାହାକୁ ଯଥା ସମ୍ଭବ ଶୀଘ୍ର ଦୂର କରି ଦେବାକୁ ପଡ଼ିବ, ଏହା ଏକ ବିଧାନ ଦ୍ୱାରା ନିୟନ୍ତ୍ରିତ ପ୍ରପଞ୍ଚ । ସେମାନଙ୍କ ମତରେ ଏ ଦ୍ୱନ୍ଦ୍ୱ ଇତିହାସକୁ ସୁବା ପରିଚାଳନା କରେ : ବସ୍ତୁନିଷ୍ଠ ବିଧାନ ଅନୁଯାୟୀ ଇତିହାସର ବିକାଶ ଘଟେ, ଏବଂ ସେଇ କାରଣରୁ ଦ୍ୱନ୍ଦ୍ୱକୁ ଦୂର କରିବା ବା ଧ୍ୱଂସ କରିବା ପରିବର୍ତ୍ତେ ତାହାର ବିକାଶ ସାଧନ କରିବାକୁ ପଡ଼ିବ । ତାହା କେତେକ ପରିମାଣର ପରିପୂର୍ଣ୍ଣତା ଲାଭ କଲେ ଆପଣାଛାଏଁ ସମାହିତ ହୋଇଯିବ । ଏସବୁ ସତ୍ୟ । ମାତ୍ର ଯୁକ୍ତିତର୍କର କ୍ଷେତ୍ରରେ ପରବର୍ତ୍ତୀ (ଆଉ ନିଷ୍ପତ୍ତିମୂଳକ) ପଏଣ୍ଟଟି ବସ୍ତୁନିଷ୍ଠତା ଓ ମାର୍କସବାଦ ମଧ୍ୟରେ ସୁସ୍ପଷ୍ଟ ପାର୍ଥକ୍ୟ ଦର୍ଶାଇ ଦିଏ । ବସ୍ତୁନିଷ୍ଠ ଦ୍ୱନ୍ଦ୍ୱ-ଗୁଡ଼ିକର ସମାଧାନରେ ମନୁଷ୍ୟର, ସାମାଜିକ ସ୍ତରର ଓ ଶ୍ରେଣୀମାନଙ୍କର ସ୍ଥାନ ଓ ସେମାନଙ୍କର ଭୂମିକାକୁ ନିର୍ଦ୍ଧାରଣ କରିବା ସହିତ ଏହା ସମ୍ପୃକ୍ତ । ବସ୍ତୁନିଷ୍ଠମାନଙ୍କର

ଆଖିରେ ଜନସାଧାରଣ ହେଉଛନ୍ତି କେବଳ ମାତ୍ର ଅଭିନେତା, ଏକ ଐତିହାସିକ ନାଟକରେ କେବଳମାତ୍ର ଗୋଟିଏ ଗୋଟିଏ **ଚରିତ୍ର,** ସେମାନଙ୍କ ଉପରେ ରହିଥିବା କୌଣସି ଏକ ମହାନ ଶକ୍ତି ଲେଖି ଦେଇଥିବା ପାଠକୁ ସେମାନେ କେବଳ ପଢ଼ୁଛନ୍ତି । ପୁଞ୍ଜିବାଦର ପ୍ରୟୋଜନୀୟତା ଓ ତା'ର ପ୍ରଗତଶୀଳ ଚରିତ୍ର ବିଷୟରେ ବିସ୍ତିନଷ୍ଟମାନେ କେବଳ କଥା କୁହନ୍ତି । ସେମାନେ ଏହା ପ୍ରମାଣ କରିବାକୁ ଚେଷ୍ଟା କରନ୍ତି ଯେ ବୁର୍ଜୁଆ ସମାଜର ବିଧାନସମୂହ ସାମନ୍ତବାଦୀ ସମାଜ ତୁଳନାରେ ସମ୍ପଦ ଉତ୍ପାଦନ ନିମନ୍ତେ ଢେର ଅଧିକ "ଉପଯୋଗୀ" । ଭଡ଼ାକରା ଶ୍ରମିକମାନଙ୍କର ଦାରିଦ୍ର୍ୟ ଓ ଯନ୍ତ୍ରଣା ବିସ୍ତିନଷ୍ଟମାନଙ୍କର ଐତିହାସିକ ଆଶାବାଦକୁ ପ୍ରଭାବିତ କରେ ନାହିଁ । ଇତିହାସ ଯେତେବେଳେ ଅପରିହାର୍ଯ୍ୟ ସେତେବେଳେ କୌଣସି ଶୋଷିତ ବ୍ୟକ୍ତିର ମୃତ୍ୟୁ ଜଣେ ଐତିହାସିକ ମୋନ୍ଲେଡ ଫଟାଇ ଦେବା ଘଟଣା ଦେଖିଲେ କିଏ କାହିଁକି ଦରଦରେ ଭାସିଯିବ ?

"ପ୍ରତ୍ୟେକ ଶିଶୁ ଜନ୍ମ ବେଳେ ଯେମିତି ଜନ୍ମ ଯନ୍ତ୍ରଣା ହୁଏ ସେମାନଙ୍କ ଆଖିରେ ଦାରିଦ୍ର୍ୟ ଠିକ୍ ସେଇଭଳି, ପ୍ରକୃତି କ୍ଷେତ୍ରରେ ହେଉ ବା ଶିଳ୍ପରେ ହେଉ ।"(୧) ଏହିପରି ଜଣେ ବିସ୍ତିନଷ୍ଟ ବ୍ୟକ୍ତି—ଅବଜେକ୍‌ଟିଭିଷ୍ଟ ନିଜର ଭାଗ୍ୟବାଦୀ ବିଶ୍ୱର ଯେତେ ଅକପଟ-ଭାବରେ ପ୍ରକଟ କଲେ ସୁଦ୍ଧା ପୁଞ୍ଜିବାଦର ପକ୍ଷ ସମର୍ଥକ ହୋଇଥାନ୍ତି ।

ହେଲେ, ସମାଜର ବିକାଶରେ ଜନସାଧାରଣଙ୍କର ଭୂମିକା ଓ ସ୍ଥାନ ବିଷୟ ହୃଦୟଙ୍ଗମ କରିବାରେ ଦୁଇଟିଯାକ ଚରମ ସ୍ଥିତିର ବିରୋଧିତା କରେ ମାର୍କସବାଦ । ସେଥିରେ ତାହାର ଦ୍ୱନ୍ଦ୍ୱାତ୍ମକ ପ୍ରସ୍ତାବନା ରହିଥାଏ : ଜନସାଧାରଣ "ସେମାନଙ୍କ ନିଜ ନାଟକରେ ଉଭୟ ରଚୟିତା ଓ ଅଭିନେତା"(୨) ଅଟନ୍ତି ।

ପ୍ରକୃତ ପକ୍ଷେ ମଣିଷର କ୍ରିୟାକଳାପ କେତେଗୁଡ଼ିଏ ବସ୍ତୁଗତ ପରିସ୍ଥିତି ଦ୍ୱାରା ମୋଟାମୋଟିଭାବେ ସ୍ଥିରୀକୃତ ହୁଏ । କର୍ମ ଆରମ୍ଭ ପୂର୍ବରୁ ତାହା ହୋଇଥାଏ । ପ୍ରତ୍ୟେକ ପିଢ଼ି ପୂର୍ବରୁ ପ୍ରସ୍ତୁତ ହୋଇଥିବା ଏକ ଭୌତିକ ଫଳ ପ୍ରାପ୍ତ ହୁଅନ୍ତି, ଗୋଟିଏ ପରିମାଣର ଉତ୍ପାଦିକା ଶକ୍ତି ଓ ନିର୍ଦ୍ଦିଷ୍ଟ ସମ୍ପର୍କ ପ୍ରାପ୍ତ ହୁଅନ୍ତି, ଯାହାକି ଇତିହାସର

---

(୧) କାର୍ଲ ମାର୍କସ, ଓ ଫ୍ରେଡରିକ ଏଙ୍ଗେଲସ :
**ସଂଗୃହୀତ ଗ୍ରନ୍ଥାବଳୀ,** ଖଣ୍ଡ-୬, ପୃ:-୧୭୬ ।

(୨) କାର୍ଲମାର୍କସ ଓ ଫ୍ରେଡରିକ ଏଙ୍ଗେଲସ :
**ସଂଗୃହୀତ ଗ୍ରନ୍ଥାବଳୀ,** ଖଣ୍ଡ-୬, ପୃ:-୧୭୦ ।

ପ୍ରକ୍ରିୟା ମଧ୍ୟରେ, ମଣିଷ ଓ ପ୍ରକୃତି ମଧ୍ୟରେ ଏବଂ ବ୍ୟକ୍ତି-ବ୍ୟକ୍ତି ମଧ୍ୟରେ ପ୍ରତିଷ୍ଠିତ ହୋଇଥାଏ। ଏହା ହିଁ ହେଉଛି ପ୍ରକୃତରେ ସେଇ ଭିତ୍ତି ଯାହାକୁ ଆଧାର କରି ପ୍ରତ୍ୟେକ ମାନବ ପିଢ଼ି ନିଜର କ୍ରିୟାକଳାପ ଚଳାଇ ରଖେ। ସେ କର୍ମ ପାଇଁ ଯେଉଁ ପରିସ୍ଥିତି ପ୍ରୟୋଜନ ହୁଏ ତାହା ସେ ନିଜେ ବାଛେ ନାହିଁ, ଅତୀତ ଠାରୁ ତାହା ପାଇଥାଏ। ଅତଏବ ସେ କ୍ରିୟାକର୍ମ କେବଳ **ସମ୍ଭାବନାର ବାସ୍ତବାୟନ** ଭିନ୍ନ, ପ୍ରସ୍ତୁତ ଭିତ୍ତିରୁ ଉଦ୍ଭବ ହୋଇଥିବା ସମସ୍ୟା ଓ ଦ୍ୱନ୍ଦ୍ୱରାଜିର ସମାଧାନ ଭିନ୍ନ ଅନ୍ୟ କିଛି ହୋଇ ନପାରେ।

ଏହି ବିଚାରରେ ମଣିଷ ହେଉଛି ଜଣେ କର୍ତ୍ତା, ଭିତ୍ତିରୁ ଉଦ୍ଭବ ହୋଇଥିବା ବସ୍ତୁଗତ ପ୍ରୟୋଜନୀୟତା ପୂରଣରେ ଜଣେ କର୍ମ ସମ୍ପାଦକ।

ଆହୁରି ମଧ୍ୟ, ମାର୍କସବାଦ ବିଚାର କରେ ଯେ ଏ ସମସ୍ତ ବସ୍ତୁନିଷ୍ଠ ପ୍ରୟୋଜନୀୟତାକୁ ପୂରଣ କରିବା କାର୍ଯ୍ୟର ବ୍ୟାପ୍ତି, ପରିସର ଓ ଧାର ପ୍ରଧାନତଃ ନିର୍ଭର କରେ ସାମାଜିକ ଗୋଷ୍ଠୀମାନଙ୍କର, ଶ୍ରେଣୀମାନଙ୍କର ତଥା ରାଜନୈତିକ ପାର୍ଟିମାନଙ୍କର, କ୍ରିୟାକଳାପ ଉପରେ। ସର୍ବୋପରି ଏହା ନିର୍ଭର କରେ ପ୍ରଗତିବାଦୀ ସାମାଜିକ ଶ୍ରେଣୀଟି ତା'ର ଐତିହାସିକ କର୍ତ୍ତବ୍ୟଗୁଡ଼ିକୁ ବୁଝିବା ଲାଗି କେତେ ଦୂର ସମର୍ଥ ହୋଇଛି ତାହାର ସଙ୍ଗଠନର ଏବଂ ସଂହତିର ସ୍ତର, ତା'ର ଦୈନନ୍ଦିନ ରାଜନୈତିକ ଓ ଅର୍ଥନୈତିକ ସଂଗ୍ରାମର କୌଶଳ ଇତ୍ୟାଦି କ'ଣ, ତାହାର ଉପରେ। ଏହାର ଅର୍ଥ ମାର୍କସବାଦ ବିଚାର କରେ ଯେ ବସ୍ତୁନିଷ୍ଠ ପରିସ୍ଥିତିଗୁଡ଼ିକୁ "ଡେଇଁ ପଡ଼ିବା" ଅଥବା ସେ ସବୁକୁ "ଆଡ଼େଇ ଦେବା" ତାହାର କାର୍ଯ୍ୟ ନୁହେଁ। କିମ୍ବା ସାମୟିକ ପରିସ୍ଥିତିର ସ୍ୱତଃସ୍ଫୂର୍ତ୍ତି ଅଗ୍ରଗତି ସମ୍ପର୍କରେ ବେଶି ଆଶାବାଦୀ ହେବା ମଧ୍ୟ ତା'ର କାମ ନୁହେଁ। ତାହାର କର୍ତ୍ତବ୍ୟ ହେଲା ସେହି ସକଳ ପରିସ୍ଥିତି ଉପରେ ଭରସା ରଖିବା ସଙ୍ଗେ ସଙ୍ଗେ ଐତିହାସିକ ପ୍ରଗତିର ମାର୍ଗରେ ମାନବ ସମାଜର ଊଣାଅଧିକେ ଯୁକ୍ତିଯୁକ୍ତ ଅଗ୍ରଗତି ସାଧନ କରିବା, ଯେପରିକି "ଜନ୍ମକାଳୀନ ଯନ୍ତ୍ରଣା ସ୍ୱଳ୍ପକାଳୀନ ହେବ ଓ ଊଣା ହେବ।"(୧) ବସ୍ତୁନିଷ୍ଠବାଦକୁ, ତାହାର ସ୍ୱତସ୍ଫୂର୍ତ୍ତିବାଦର ସ୍ଲୋଗାନକୁ, "ସାମାଜିକ ପ୍ରତିଭାର ସର୍ବ ଶକ୍ତିମାନ କ୍ଷମତା"ର ବିଚାରଧାରାରେ ବିଶ୍ୱାସୀ ପେଟି-ବୁର୍ଜୁଆ ବେଚ୍ଛା-

---

(୧) କାର୍ଲ ମାର୍କସ—**କାପିଟାଲ**, ଖଣ୍ଡ-୧, ପ୍ରଗତି ପ୍ରକାଶନ
ମସ୍କୋ, ୧.୯୭୯, ପୃ:-୨୦

ବାଦିତାର ବିରୋଧ ମାର୍କସବାଦ କଲାବେଳେ ଶ୍ରେଣୀ ସଂଗ୍ରାମକୁ ପ୍ରୟୋଗ କରେ, ଯାହାକି ଚେତନାର ସ୍ୱଚ୍ଛ ଆଲୋକ ଦ୍ୱାରା ଆଲୋକିତ ହୋଇଥାଏ, ଏବଂ ଯେଉଁ କର୍ମ ମାଧ୍ୟମରେ ପ୍ରଗତିଶୀଳ ଶକ୍ତିମାନେ ବସ୍ତୁନିଷ୍ଠ ଅବସ୍ଥା ଉପରେ ନିର୍ଭର କରି (ଅଥଚ ଅନ୍ଧ ବିଶ୍ୱାସ ବର୍ଜିତ ହୋଇ) ଇତିହାସ ସୃଷ୍ଟି କରନ୍ତି । "ଏ ଯାବତ ପ୍ରଚଳିତ ରହି ଆସିଥିବା ସମସ୍ତ ସମାଜର ଇତିହାସ ହେଉଛି ଶ୍ରେଣୀ ସଂଗ୍ରାମର ଇତିହାସ"(୧) —ଏହା ହେଉଛି **ଇସ୍ତାହାର**ର ମୂଳମନ୍ତ୍ର ।

ଯେହେତୁ ଶ୍ରେଣୀ ସଂଗ୍ରାମଗୁଡ଼ିକର ଧାରା ମଧ୍ୟରେ ବିଭିନ୍ନ ଯୁଗ ବିଶେଷ ରୂପ ଗ୍ରହଣ କରେ, ମାର୍କସବାଦର ଏ ଉକ୍ତି ଏକାନ୍ତ ସତ୍ୟ ଯେ ମଣିଷ ହେଉଛି ମାନବ ଇତିହାସରୂପୀ ନାଟକର ରଚୟିତା ।

**ଇସ୍ତାହାର**ର ଏହି ଐତିହାସିକ ବସ୍ତୁବାଦୀ ଧାରଣାରେ ବସ୍ତୁନିଷ୍ଠ ପରିସ୍ଥିତି ଓ ଜନସାଧାରଣଙ୍କ କ୍ରିୟାକର୍ମ ଭିତରେ ଥିବା ସମ୍ପର୍କ ପ୍ରକଟିତ ହୋଇଛି । ଏଥିରେ ଦର୍ଶାଯାଇଅଛି ଯେ **ପରିସ୍ଥିତି ଜନସାଧାରଣକୁ ସୃଷ୍ଟି କରେ ଠିକ୍ ଯେମିତି ଜନସାଧାରଣ ପରିସ୍ଥିତି ସୃଷ୍ଟି କରନ୍ତି ।** ଆଉ ଏହା ହିଁ ହେଉଛି, ପରସ୍ପର ବିରୋଧି ଗଠନବିନ୍ୟାସର ଦ୍ୱନ୍ଦ୍ୱଗୁଡ଼ିକୁ ବିଶ୍ଳେଷଣ କରିବାର ତଥା ସେଗୁଡ଼ିକର ସମାଧାନ ନିମନ୍ତେ ମାର୍ଗ ଅନ୍ୱେଷଣର ସର୍ବାପେକ୍ଷା ଫଳପ୍ରଦ ପଦ୍ଧତିଗତ ମୂଳଭିତ୍ତି ।

ପୁଞ୍ଜିବାଦର "ଭଲ" ଓ "ମନ୍ଦ" ଦିଗଗୁଡ଼ିକ ମଧ୍ୟରେ ତଥା ସେଗୁଡ଼ିକ ଭିତରେ ଥିବା ବିରୋଧ ମଧ୍ୟରେ ପାର୍ଥକ୍ୟକୁ ଅତି ସ୍ପଷ୍ଟ ଓ ଚମତ୍କାରଭାବେ ଦର୍ଶାଇ ଦେଇଥାଏ ମାର୍କସବାଦ । ମାତ୍ର ସେଗୁଡ଼ିକ ପରସ୍ପର ଉପରେ ନିର୍ଭରଶୀଳ ବୋଲି ଦେଖିଥାଏ ମାର୍କସବାଦ, ଯାହା ପ୍ରୋଧୋଁବାଦ କରେ ନାହିଁ । ଅତଏବ, ପରସ୍ପର ବିରୋଧୀ ସାମାଜିକ ଗଠନବିନ୍ୟାସଗୁଡ଼ିକ ବିଷୟରେ ଗବେଷଣା କରିବା ସମୟରେ ମାର୍କସବାଦ ଯେଉଁ ସାଧାରଣ ଦ୍ୱନ୍ଦ୍ୱାତ୍ମକ କର୍ତ୍ତବ୍ୟ ପାଳନ କରେ, ତାହା ହେଲା ଏଇ : "ଏହା ଦର୍ଶାଇବାକୁ ହେବ ଯେ ଏ ବିରୋଧିତା ଭିତରେ ସମ୍ପଦର ସୃଷ୍ଟି କେମିତି ହେଲା, ଶ୍ରେଣୀ-ବିରୋଧ ସାଙ୍ଗେ ସାଙ୍ଗେ ଏକା ସମୟରେ ଉତ୍ପାଦିକା ଶକ୍ତିର ବିକାଶ କିପରି ହେଲା, ଶ୍ରେଣୀଗୁଡ଼ିକ

---

(୧) କାର୍ଲ ମାର୍କସ ଓ ଫ୍ରେଡରିକ ଏଙ୍ଗେଲସ—**ସଂଗୃହୀତ ଗ୍ରନ୍ଥାବଳୀ** ଖଣ୍ଡ-୬, ପୃ:-୪୮୨ ।

ଭିତରୁ ଗୋଟିଏ ତାହାର ମୁକ୍ତି ନିମନ୍ତେ ଆବଶ୍ୟକ ଥିବା ଭୌତିକ ପରିସ୍ଥିତି ସମ୍ପୂର୍ଣ୍ଣ ପରିପୂର୍ଣ୍ଣତା ଲାଭ ନକରିବା ଯାଏଁ"(୧) ଉପରେ ସମାଜର ଦୁର୍ବଳତାଭାବେ ପରିଚିତ ମନ୍ଦ ଦିଗଟି ବୃଦ୍ଧି ପାଇବାରେ ଲାଗିଲା ।

ଏଇ କର୍ତ୍ତବ୍ୟକୁ ମାର୍କସ ଓ ଏଙ୍ଗେଲସ ସେମାନଙ୍କର **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର**ରେ ସମ୍ପାଦନ କରିଥିଲେ ।

---

(୧) କାର୍ଲ ମାର୍କସ ଓ ଫ୍ରେଡରିକ ଏଙ୍ଗେଲସ—**ସଂଗୃହୀତ ଗ୍ରନ୍ଥାବଳୀ** ଖଣ୍ଡ-୬, ପୃ:-୧୭୫ ।

# ବୁର୍ଜୁଆ ପ୍ରଗତି ଓ ତା'ର ସୀମାର ଦ୍ୱାନ୍ଦ୍ୱିକଧାର

ବୁର୍ଜୁଆ ପ୍ରଗତି ହେଲ "...ସେଇ ବୀଭତ୍ସ, ପୌତ୍ତଳିକ ଦେବତା ସଦୃଶ ଯିଏ ନିହତର ମୁଣ୍ଡ ଖପୁରି ଛଡ଼ା ଆଉ କେଉଁଥିରେ ଅମୃତ ପାନ କରିବ ନାହିଁ ।"

—କାର୍ଲ ମାର୍କସ

**ଇସ୍ତାହାର**ରେ ପୁଞ୍ଜିବାଦର ଯେଉଁ ଅଧ୍ୟୟନ ପ୍ରଦତ୍ତ ହୋଇଛି ତାହା ଡାଇଲେକଟିକାଲ—ଦ୍ୱନ୍ଦ୍ୱମୂଳକ—ବିଶ୍ଳେଷଣର ଏକ ଉଦାହରଣ । ମାର୍କସ ଓ ଏଙ୍ଗେଲସ ପୁଞ୍ଜିବାଦୀ ସମ୍ପର୍କକୁ ନୈତିକତା ଦୃଷ୍ଟିରୁ ସମାଲୋଚନା କରି ନାହାନ୍ତି । ବରଂ ସେମାନେ ପୁଞ୍ଜିବାଦୀ ବିକାଶର ଅନ୍ତର୍ନିହିତ ଯୁକ୍ତିକୁ ବିବେଚନା କରିବାର ଚେଷ୍ଟା କରିଛନ୍ତି ଏବଂ ଇତିହାସର ଗୋଟିଏ ଅଧ୍ୟାୟରେ ତାହାର ଯେଉଁ ସଭ୍ୟତା ପ୍ରସାରକାରୀ ଭୂମିକା ଥାଏ ତାହାକୁ, ଆଉ ସମସ୍ତ କ୍ରମେ ଠିକ୍ ସେଇ ଯୁକ୍ତିଧାରା (ଅର୍ଥାତ ତା'ର ଅର୍ଥନୈତିକ ଭିତ୍ତିର ସ୍ୱ-ବିକାଶ ଓ ଅଗ୍ରଗତି) ଉପରେ ଏ ପ୍ରଣାଳୀକୁ ଏପରି ଏକ ସୀମା ବା ସ୍ଥଳରେ ପହଞ୍ଚାଇଦିଏ ଯାହା ବାହାରେ ଏହାର ଅସ୍ତିତ୍ୱ ଓ କାର୍ଯ୍ୟକ୍ରମ ମାନବ ଇତିହାସର କ୍ରମ ବିକାଶରେ ପ୍ରତିବନ୍ଧକ ହୋଇଥାଏ—ଏହି କଥା ସେମାନେ ଦର୍ଶାଇଛନ୍ତି ।

ବୁର୍ଜୁଆମାନେ ଇତିହାସଗତଭାବେ ଏକ ଅତ୍ୟନ୍ତ ବୈପ୍ଳବିକ କର୍ତ୍ତବ୍ୟ ସାଧନ କରିଛନ୍ତି ।"(୧) ଏହି ନିର୍ଦ୍ଧାରଣରୁ ହିଁ **ଇସ୍ତାହାର**ର ଲେଖକମାନେ ବୁର୍ଜୁଆ ପ୍ରଗତିର

---

(୧) କାର୍ଲମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ –
**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ–୬, ପୃ:–୪୮୭ ।

ଅପେକ୍ଷାକୃତ ଏକ ଜଟିଳ ଡାଏଲେକ୍‌ଟିକ୍ ବା ଦ୍ୱାନ୍ଦ୍ୱିକଧାରାର ବିଶ୍ଳେଷଣ ଆରମ୍ଭ କରିଛନ୍ତି । ମାର୍କସ ଓ ଏଙ୍ଗେଲସ ଇତିହାସ ବିଗ୍ରହରୁ ବୁର୍ଜୁଆର ବୈପ୍ଲବିକ ଭୂମିକାକୁ ମୁଖ୍ୟତଃ ଦୁଇଟି ବିଷୟ ସହିତ ସଂଯୁକ୍ତ କରିଛନ୍ତି—ଉତ୍ପାଦିକା ଶକ୍ତିମାନଙ୍କର ଦ୍ରୁତ ଓ ବିଶାଳ ଅଭିବୃଦ୍ଧି ଏବଂ ମଣିଷର ଶକ୍ତି ତଥା ସମ୍ଭାବନାରେ ବୃଦ୍ଧି (ବୁର୍ଜୁଆ ଶ୍ରେଣୀର ଇଚ୍ଛା ଓ ଆକାଂକ୍ଷାଠାରୁ ସ୍ୱତନ୍ତ୍ର ଓ ବିଚ୍ଛିନ୍ନ) । ସମାଜର ଭାବୀ ସମାଜବାଦୀ ସଙ୍ଗଠନ ନିମନ୍ତେ ଆବଶ୍ୟକ ହେଉଥିବା ଦୁଇଟି ଉପାଦାନର ଆବିର୍ଭାବ ସମ୍ପର୍କରେ ହିଁ ସେମାନେ ମୁଖ୍ୟତଃ କହିଛନ୍ତି ।

ପୂର୍ବତନ ସବୁତକ ପିଢ଼ି ଏକାଠି ମିଶି ଯାହା କରିଛନ୍ତି, ତାହାଠାରୁ ଅଧିକ ପ୍ରକାଣ୍ଡ ଓ ବିଶାଳକାୟ ଉତ୍ପାଦିକା ଶକ୍ତି ସୃଷ୍ଟି କରିଛନ୍ତି ବୁର୍ଜୁଆମାନେ ସେମାନଙ୍କର ମାତ୍ର ଏକଶତ ବର୍ଷର ସଂକ୍ଷିପ୍ତ ଶାସନ କାଳରେ ବୋଲି **ଇସ୍ତାହାର**ର ଲେଖକମାନେ ଉଲ୍ଲେଖ କରିଛନ୍ତି । ପ୍ରକୃତିର ଶକ୍ତିମାନେ ମଣିଷ ଓ ମେସିନର ଅଧୀନତା ସ୍ୱୀକାର କରିବା, ଶିଳ୍ପ ଓ କୃଷିରେ ରସାୟନର ପ୍ରୟୋଗ ହେବା, ବାଷ୍ପ ଚାଳିତ ଜଳଯାନ, ରେଲବାଇ, ଇଲେକ୍‌ଟ୍ରିକ ଟେଲିଗ୍ରାଫ କାମ କରିବା, କୃଷି କାର୍ଯ୍ୟ ନିମନ୍ତେ ଗୋଟା ଗୋଟା ମହାଦେଶକୁ ଖୋଳି ତାଡ଼ି ସଫା କରିଦେବା, ନଦୀମାନଙ୍କରୁ କେନାଲ ବାହାର କରିବା, ସମଗ୍ର ଆକାରରେ ଜନ ସାଧାରଣଙ୍କୁ ଏକ ପ୍ରକାର ଭୋଜବାଜି ପରି ଉତ୍ଥିତ କରିବା—ଯାହା ପୂର୍ବତନ କୌଣସି ଶତାବ୍ଦୀରେ ଖାଲି କଳ୍ପନା କରାଯାଇଥିଲା ଯେ ସାମାଜିକ ଶ୍ରମର କୋଳରେ ଏପରି ଉତ୍ପାଦିକା ଶକ୍ତି ଲୁକାୟିତ ରହିଛି"(୧) । ଅନ୍ୟ ଏକ ବିଭବ ମଧ୍ୟ **ଇସ୍ତାହାର**ରେ ଉଲ୍ଲେଖ କରାଯାଇଥିଲା : "···ଶିଳ୍ପର ବିକାଶ ସହିତ ସର୍ବହରାର ସଂଖ୍ୟା କେବଳ ବଢ଼ିଯାଏ ନାହିଁ, ଏହା ବୃହତ୍ତର ସଂଖ୍ୟାରେ ଜନସାଧାରଣଙ୍କ ଭିତରେ କେନ୍ଦ୍ରୀଭୂତ ହୁଏ, ଏହାର ଶକ୍ତି ବୃଦ୍ଧିପାଏ, ଏବଂ ଏ ଶକ୍ତିକୁ ଅଧିକ ମାତ୍ରାରେ ଏହା ନିଜେ ଅନୁଭବ କରେ ।"(୨) ଅଧିକନ୍ତୁ, "···ପୂର୍ବତନ ସମାଜର ଶ୍ରେଣୀମାନଙ୍କ ଭିତରର ସଂଘାତ ଅନେକ ପ୍ରକାରେ ସର୍ବହରାର ବିକାଶର ଧାରାକୁ ଆଗେଇ ନିଏ ।

---

(୧) କାର୍ଲମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ—**ସଂଗୃହୀତ ଗ୍ରଂଥାବଳୀ**
ଖଣ୍ଡ-୬, ପୃ: ୪୮୯ ।

(୨) କାର୍ଲ ମାର୍କସ ଓ ଫ୍ରେଡରିକ ଏଙ୍ଗେଲସ—
**ସଂଗୃହୀତ ଗ୍ରଂଥାବଳୀ,** ଖଣ୍ଡ-୬ ପୃ: ୪୯୨ ।

ବୁର୍ଜୁଆ ଏକ ଅବିରତ ସଂଗ୍ରାମରେ ଜଡ଼ିତ ହୋଇଯାଏ । ପ୍ରଥମେ ସମ୍ଭ୍ରାନ୍ତ ବର୍ଗ ସହିତ ; ଏବଂ ପରେ, ଖୋଦ ବୁର୍ଜୁଆର ଉକ୍ତ ଅଂଶଗୁଡ଼ିକ ସହିତ, ଯେଉଁଗୁଡ଼ିକର ସ୍ୱାର୍ଥ ଶିଳ୍ପର ବିକାଶ ସହିତ ବିରୋଧାତ୍ମକ ହୋଇଛି ; ସବୁ ସମୟରେ ବାହାର ଦେଶଗୁଡ଼ିକର ବୁର୍ଜୁଆ ସହିତ । ଏ ସମସ୍ତ ସଂଗ୍ରାମରେ ଏହା ସର୍ବହରାଙ୍କୁ ଆବେଦନ ନିବେଦନ କରିବାକୁ ବାଧ୍ୟ ହୋଇଥାଏ, ତାହାର ସହାୟତା ଲୋଡ଼ିଥାଏ, ଏବଂ ଏହିପରିଭାବରେ, ସର୍ବହରାଙ୍କୁ ରାଜନୈତିକ କ୍ଷେତ୍ରକୁ ଟାଣି ଆଣିଥାଏ । ଅତଏବ ସ୍ୱୟଂ ବୁର୍ଜୁଆ ତାହାର ନିଜର ରାଜନୈତିକ ଓ ସାଧାରଣ ଶିକ୍ଷାର କେତେକ ବିଷୟ ସର୍ବହରାଙ୍କୁ ପ୍ରଦାନ କରେ, ଅନ୍ୟ କଥାରେ କହିଲେ ବୁର୍ଜୁଆ ସହିତ ସଂଗ୍ରାମ କରିବା ନିମନ୍ତେ ସର୍ବହରାଙ୍କୁ ଏହା ହତିଆର ଯୋଗାଇ ଦିଏ ।"(୧)

**ଇସ୍ତାହାର**ର ଏହି ସମସ୍ତ ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ତତ୍ତ୍ୱଗୁଡ଼ିକୁ ଏହାର ରଚୟିତାମାନେ ଏକ ବ୍ୟାପକ ଅର୍ଥନୈତିକ ଓ ଐତିହାସିକ ପରିପ୍ରେକ୍ଷୀରେ ଏବଂ ଏକ ସୁନିର୍ଦ୍ଦିଷ୍ଟ ରାଜନୈତିକ ପରିପ୍ରେକ୍ଷୀରେ ବିସ୍ତାରିତଭାବେ ବ୍ୟାଖ୍ୟା କରିଥିଲେ ଓ ଟୀକା ଦେଇଥିଲେ । **ଇସ୍ତାହାର**ରେ ଥିବା ଏହି ବହୁମୂଲ୍ୟ ବୀଜଗୁଡ଼ିକରୁ ଏକ ସର୍ବାତ୍ମକ ମାର୍କସବାଦୀ ତତ୍ତ୍ୱ ଓ ତାହାର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବନାମାନ ଜନ୍ମଲାଭ କରିଥିଲା, ଯେଉଁ ବିଷୟରେ ଲେନିନ ଖୋଦ ତତ୍ତ୍ୱଟିର ଯୁକ୍ତିଧାରାକୁ ବୁଝିବା ନିମନ୍ତେ ଏବଂ ଆଧୁନିକ ଅବସ୍ଥାରେ ତାହାର ମୌଳିକ ନୀତିଗୁଡ଼ିକୁ ସଠିକଭାବେ ପ୍ରୟୋଗ କରିବା ସକାଶେ ଆବଶ୍ୟକ ଥିଲା ।

ପୁଞ୍ଜିବାଦର ଐତିହାସିକ ଅନିବାର୍ଯ୍ୟତା ତଥା ଐତିହାସିକ ସୀମାପରିସୀମା ସମ୍ବନ୍ଧୀୟ ସେଇ ତାତ୍ତ୍ୱିକ ଯୁକ୍ତିତର୍କର ବିଭିନ୍ନ ସ୍ତର ପ୍ରତି ଆମେ ବର୍ତ୍ତମାନ ଟିକିଏ ନଜର ଦେବା, ଯାହାର ଭିତ୍ତି ସ୍ଥାପିତ ହୋଇଛି **ଇସ୍ତାହାର**ରେ ।

"ବୁର୍ଜୁଆ ଶ୍ରେଣୀର ସ୍ଥିତି, ଆଉ ତା'ର ପ୍ରଭାବର ପ୍ରଧାନ ସର୍ତ୍ତ ହେଲା ପୁଞ୍ଜିର ଗଠନ ଓ ପ୍ରସାର ; ପୁଞ୍ଜିର ସର୍ତ୍ତ ହେଲା ମଜୁରିଭୋଗୀ ଶ୍ରମିକ"(୨) ବୋଲି **ଇସ୍ତାହାର**ରେ ଉଲ୍ଲିଖିତ ହୋଇଛି । ପରେ, ଏଙ୍ଗେଲସ ଲେଖିଲେ ଯେ "...ଶ୍ରମର

---

(୧) କାର୍ଲ ମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲ—
**ସଂଗୃହୀତ ଗ୍ରନ୍ଥାବଳୀ** ଖଣ୍ଡ-୬, ପୃ: ୪୯୩ ।

(୨) କାର୍ଲମାର୍କସ ଓ ଫ୍ରେଡରିକ ଏଙ୍ଗେଲସ—
**ସଂଗୃହୀତ ଗ୍ରନ୍ଥାବଳୀ,** ଖଣ୍ଡ-୬, ପୃ: ୪୯୬ ।

ଦିଆଯାଉ ନଥିବା ମୂଲ୍ୟକୁ ଆତ୍ମସାତ୍ କରିନେବା ହେଉଛି ପୁଞ୍ଜିବାଦୀ ଉତ୍ପାଦନ ପ୍ରଣାଳୀର, ଆଉ ଯେ ବ୍ୟବସ୍ଥାରେ ଶ୍ରମିକକୁ ଶୋଷଣ କରିବାର ମୂଳଭିତ୍ତି”(୧) ବୋଲି ମାର୍କସବାଦ ଦର୍ଶାଇ ଦେଇଛି । ତେଣୁ କରି, ପୁଞ୍ଜିବାଦର ସଭ୍ୟତା ପ୍ରସାରକାରୀ ବ୍ରତ ସମ୍ପର୍କରେ ଗମ୍ଭୀର ଅନୁଶୀଳନର ଲକ୍ଷ୍ୟ ଏଇଆ ହେବା ଉଚିତ ଯେ କିପରି ଭାବରେ ଉକ୍ତ ଭିତ୍ତିକୁ ଆତ୍ମସ୍ଥ କରି ଏହା ତା’ର ପ୍ରଗତିଶୀଳ ଐତିହାସିକ କର୍ତ୍ତବ୍ୟ ସମ୍ପାଦନ କରୁଛି (ପେଟି-ବୁର୍ଜୁଆ ଓ ଉଦାରପନ୍ଥୀ ତତ୍ତ୍ୱବିତ୍‌ମାନେ ପୂର୍ବେ କରିଥିବା ଓ ବର୍ତ୍ତମାନ କରୁଥିବା ଯୁକ୍ତି ଭଳି, ସେଇ ଭିତ୍ତିର ବାହାରେ ନୁହେଁ ଅଥବା ତା’ର ବିରୋଧ ନକରି), ତାହା ଦେଖାଇ ଦେବା ।

ଏହା ବୁଝିବା ନିମନ୍ତେ ମାର୍କସଙ୍କ ଦ୍ୱାରା ପ୍ରଦତ୍ତ ନିମ୍ନଲିଖିତ ଧାରଣାକୁ ବିଚାର କରିବା ଆବଶ୍ୟକ : “ପୁଞ୍ଜି ପକ୍ଷରେ ଯାହା ଉଦ୍‌ବୃତ୍ତ ମୂଲ୍ୟ ରୂପେ ପ୍ରତୀୟମାନ ହୁଏ, ଶ୍ରମିକ ପକ୍ଷରେ ତାହା ଠିକ୍ ଉଦ୍‌ବୃତ୍ତ ଶ୍ରମ ରୂପେ ଦେଖାଯାଏ ଯାହାକି ଶ୍ରମିକଭାବରେ ତାହାର ପ୍ରୟୋଜନୀୟତାର ଅତିରିକ୍ତ ହୋଇଥାଏ, ଏବଂ ସେଇ କାରଣରୁ ତା’ର କର୍ମ ଶକ୍ତିକୁ ବଞ୍ଚାଇ ରଖିବା ଲାଗି ତା’ର ତତ୍କାଳୀନ ପ୍ରୟୋଜନୀୟତା ଠାରୁ ଏହା ଅଧିକ ହୁଏ ।(୨) ଏହି “ଉଦ୍‌ବୃତ୍ତ ଶ୍ରମ”ର ବିଶେଷ ଗମ୍ଭୀର ଅଧ୍ୟୟନ କରାହେବା ଆବଶ୍ୟକ । କଥା ହେଲା ଯେ ପୁଞ୍ଜିପତି ନିମନ୍ତେ ଉଦ୍‌ବୃତ୍ତ ମୂଲ୍ୟ ଉତ୍ପାଦନ କରିବା ସଙ୍ଗେ ସଙ୍ଗେ ଉଦ୍‌ବୃତ୍ତ ଶ୍ରମ ଅନ୍ୟ ଏକ ଜିନିଷ ଉତ୍ପାଦନ କରେ, ଯେଉଁଥି ପାଇଁ ପୁଞ୍ଜିପତି ନୁହେଁ କି ଶ୍ରମିକ ନୁହେଁ କେହି ଚେଷ୍ଟା କରି ନଥାନ୍ତି : ଅର୍ଥାତ ସମାଜର ଭୌତିକ ସମ୍ପଦ ଓ ଉତ୍ପାଦିକା ଶକ୍ତିର ବୃଦ୍ଧି ! ଆଉ, ସାମାଜିକ ଉତ୍ପାଦିକା ଶକ୍ତିମାନଙ୍କର ବୃଦ୍ଧି ସାଙ୍ଗେ ସାଙ୍ଗେ ପ୍ରକୃତି ଉପରେ ମଣିଷ ଅଧିକ ଆଧିପତ୍ୟ ବିସ୍ତାର କରେ । ଏଣେ ଶ୍ରମିକର ପ୍ରୟୋଜନୀୟତା ତଥା ଉତ୍ପାଦନ ପାଇଁ ତା’ର ଦକ୍ଷତା ଓ ସମ୍ଭାବନା ବୃଦ୍ଧି ପାଉଥାଏ । ପୁଣି ପରିଶେଷରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଗୋଟିଏ ଘଟଣା ଘଟିଥାଏ । ଉତ୍ପାଦିକା ଶକ୍ତିମାନଙ୍କୁ ଅଭୂତପୂର୍ବ ବେଗରେ ବଢ଼ାଇବା ଫଳରେ ପୁଞ୍ଜି ନିଜର ଇଚ୍ଛା ଥାଉ ବା ନଥାଉ, ଏପରି ଏକ

---

(୧) କାର୍ଲମାର୍କସ ଓ ଫ୍ରେଡରିକ ଏଙ୍ଗେଲସ—
**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୩, ପୃ: ୧୩୩ ।

(୨) କାର୍ଲମାର୍କସ ଓ ଫ୍ରେଡରିକ ଏଙ୍ଗେଲସ :
**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୨ , ପୃ: ୨୫୦ ।

କାର୍ଯ୍ୟ କରେ ଯେଉଁ କାରଣ ଯୋଗୁଁ ତାହା ସାମାଜିକଭାବେ ମୁକ୍ତ ସମୟ ବୃଦ୍ଧି କରିବା ନିମନ୍ତେ ପରିସ୍ଥିତି ସୃଷ୍ଟି କରିବାରେ ନିଜେ ଏକ ମାଧ୍ୟମ ହୋଇଯାଏ । ସାମଗ୍ରିକଭାବେ ସମାଜର କାର୍ଯ୍ୟ କରିବା ସମୟକୁ ହ୍ରାସ କରି ଦେଇ ତାହାକୁ ଏହା ପୂର୍ବାପେକ୍ଷା ସବୁଠାରୁ କମ କରିଦିଏ, ଆଉ ଏହା କରିଥାରେ ସମାଜର ପ୍ରତ୍ୟେକ ସଦସ୍ୟଙ୍କୁ ନିଜ ନିଜର ବିକାଶ ସକାଶେ ଅଧିକ ସମୟ ଯୋଗାଇଦିଏ । ଏଥିରୁ ଦେଖାଯାଏ ପୁଞ୍ଜି ଏପରି ଶକ୍ତିଶାଳୀ ଉତ୍ପାଦିକା ଶକ୍ତିମାନଙ୍କୁ ସୃଷ୍ଟି କରେ ଏବଂ ଏଭଳି ଉଚ୍ଚ ଶ୍ରମ ଉତ୍ପାଦନଶୀଳତା ଦିଗକୁ ଏହାକୁ ନିଆଯାଏ ଯେ **ଅତି ଅଳ୍ପ କାର୍ଯ୍ୟ ସମୟ ଭିତରେ** ଜନସାଧାରଣଙ୍କ ପ୍ରୟୋଜନୀୟତା ମେଣ୍ଟାଇବା ନିମନ୍ତେ ଆବଶ୍ୟକ ହେଉଥିବା ସବୁ ଦ୍ରବ୍ୟର ଉତ୍ପାଦନ ସମ୍ଭବପର ହୁଏ । ଏହାର ପରିଣାମରେ ମୁକ୍ତ ସମୟର ପରିମାଣ ବୃଦ୍ଧି ପାଏ । ଏହା ଅବଶ୍ୟ ଠିକ ଯେ ଶ୍ରମିକର ମୁକ୍ତ ସମୟ ଅତି କମ୍ ବଢ଼େ । (ଅନେକ ଉପାୟ ପ୍ରୟୋଗ କରି ଏଥିରେ ବାଧା ପ୍ରଦାନ ସକାଶେ ପୁଞ୍ଜି ଚେଷ୍ଟା କରେ) । ଅତଏବ ପୁଞ୍ଜିବାଦୀ ବ୍ୟବସ୍ଥାରେ ମୁକ୍ତ ସମୟ ବୋଇଲେ କାର୍ଯ୍ୟତଃ କେବଳ ମାତ୍ର **ସମ୍ଭାବନାସୂଚକ** ମୁକ୍ତ ସମୟକୁ ଓ ତାହାର ସୁଯୋଗ ସମ୍ଭାବନାକୁ ବୁଝାଇଥାଏ ।

ଏହା ସତ୍ତ୍ୱେ ମୁକ୍ତ ସମୟର "ସୃଷ୍ଟି" ହେଉଛି ପୁଞ୍ଜିବାଦର ସଭ୍ୟତା ପ୍ରସାରକାରୀ ବୃତ୍ତିର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଅଖଣ୍ଡ ଲକ୍ଷଣ । ତା'ର କାରଣ ମୁକ୍ତ ସମୟ ହେଉଛି ଏକମାତ୍ର ଭିତ୍ତି ଯାହା ଯୋଗୁଁ ମଣିଷର ସର୍ବାତ୍ମକ ଓ ସର୍ବାଙ୍ଗୀନ ବିକାଶ ସମ୍ଭବପର (ଏହି କାରଣରୁ ମାର୍କସଙ୍କ ବିଶ୍ୱାସ ଅନୁସାରେ ଭାବୀ ସମାଜରେ ସମ୍ପଦର କଳନା କାମ ସମୟରୁ କରାଯିବ ନାହିଁ, "ମୁକ୍ତ ସମୟ"ରୁ କରାଯିବ) ।

ସବୁ ସମୟ ଭଳି ମାର୍କସ ଏକ ବିଶାଳ ଓ ଗଭୀର ଦ୍ୱନ୍ଦ୍ୱାତ୍ମକ ତତ୍ତ୍ୱାନ୍ତ ସୂତ୍ର ଉତ୍ଥାପନ କରିଛନ୍ତି : "ତେବେ, ସମ୍ପଦର ସାଧାରଣ ରୂପ ନିମନ୍ତେ ଅବିଶ୍ରାନ୍ତ ପ୍ରଚେଷ୍ଟାର ଅଙ୍ଗଭାବରେ ପୁଞ୍ଜି ସ୍ୱାଭାବିକ ପ୍ରୟୋଜନୀୟତାର ସୀମା ବାହାରକୁ ବାଧ୍ୟ କରି ଶ୍ରମିକକୁ ନେଇଯାଏ, ଏବଂ ଏହିପରିଭାବରେ ("ଏହିପରି ଭାବରେ" ଲକ୍ଷ୍ୟ କରନ୍ତୁ—ଲେଖକ) **ବ୍ୟକ୍ତିଗତଭାବେ** ଧନବାନର ବିକାଶ ନିମନ୍ତେ ଭୌତିକ ସୁବିଧା ସୃଷ୍ଟି କରେ । ଉପଭୋଗ କ୍ଷେତ୍ରରେ ଯେମିତି ଉତ୍ପାଦନ କ୍ଷେତ୍ରରେ ମଧ୍ୟ ସେଇଭଳି ବହୁବିଧ ଓ ବ୍ୟାପକ ।"(୧)

---

(୧) କାର୍ଲ ମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ—**ସଂଗୃହୀତ ଗ୍ରନ୍ଥାବଳୀ,** ଖଣ୍ଡ-୨୮ ପୃ: ୨୫୧ ।

ଏହାହିଁ ହେଉଛି "ଉଦ୍‌ବୃତ୍ତ ଶ୍ରମ"ର ସାରକଥା ଓ ତାତ୍ପର୍ଯ୍ୟ, ଯାହା କରିବା ଲାଗି ଶ୍ରମିକକୁ ବାଧ୍ୟ କରେ ପୁଞ୍ଜି ; ସେଇଥି ଯୋଗୁଁ ମାର୍କସଙ୍କର ଏ ଉକ୍ତି ସମ୍ପୂର୍ଣ୍ଣ ସତ୍ୟ ଯେ : "ପୁଞ୍ଜି ର ପ୍ରଧାନ ଐତିହାସିକ ବିଭବ ହେଉଛି ଏହି **ଉଦ୍‌ବୃତ୍ତ** ଶ୍ରମର ସୃଷ୍ଟି ।"(୧)

ସମ୍ଭାବନାଯୁକ୍ତ ମୁକ୍ତ ସମୟର ସୃଷ୍ଟି ଏବଂ ତେଣୁ କରି ଶ୍ରମିକମାନଙ୍କର ସର୍ବଜନୀନ ପ୍ରୟୋଜନୀୟତାଗୁଡ଼ିକର ବିକାଶ ନିମନ୍ତେ ସମ୍ଭାବନା, ପୁଣି ସାମଗ୍ରିକଭାବରେ ସମାଜର କାମ ସମୟକୁ ସର୍ବ ନିମ୍ନ ସ୍ତରକୁ କମାଇ ଦେବା—ଏହି କାରଣଗୁଡ଼ିକ ଯୋଗୁଁ ପୁଞ୍ଜି ଐତିହାସିକଭାବେ ପ୍ରୟୋଜନୀୟ ଓ ସମର୍ଥନଯୋଗ୍ୟ । ମାତ୍ର କେତେକ ନିର୍ଦ୍ଦିଷ୍ଟ ଐତିହାସିକ ସମୟସୀମା ନିମନ୍ତେ ଏହା ପ୍ରୟୋଜନୀୟ ଓ ସମର୍ଥନ ଯୋଗ୍ୟ । କିନ୍ତୁ ଯେତେବେଳେ ଖୋଦ୍ ଉତ୍ପାଦିକା ଶକ୍ତିମାନଙ୍କର ବିକାଶ "ସ୍ୱୟଂ ପୁଞ୍ଜି ଦ୍ୱାରା ବାଧାପ୍ରାପ୍ତ ହୁଏ"(୨), ସେତେବେଳେ ଏହା ସମର୍ଥନର ଯୋଗ୍ୟ ହୋଇ ଆଉ ରହେ ନାହିଁ ।

କେଉଁ ପ୍ରକାରର ବାଧା ଏହା ? ଉତ୍ପାଦିକା ଶକ୍ତିମାନଙ୍କର ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାର ଉପାଦାନ ହେଲା ଯେଉଁ ପୁଞ୍ଜି ତାହା କିପରି ପୁଣି ଗତିରୋଧକାରୀ ହୁଏ ?

ଏ ପ୍ରଶ୍ନର ଉତ୍ତର ପ୍ରଦାନ କାଳରେ, ବାହ୍ୟ ପ୍ରଭାବ ବା ପରିବେଶ ଯୋଗୁ ପୁଞ୍ଜି ଏଠି ଆସି କିପରି ପହଞ୍ଚିଲା ତା'ର କାରଣ ଖୋଜିବାକୁ ମାର୍କସବାଦ ଚେଷ୍ଟା କରେ ନାହିଁ (ପୁଞ୍ଜିବାଦୀ ଉତ୍ପାଦନ ପ୍ରଣାଳୀରେ ଯାହା ହୋଇଥାଏ) । ମାର୍କସବାଦ ସର୍ବଦା ଦ୍ୱନ୍ଦ୍ୱାତ୍ମକ ପ୍ରଣାଳୀରେ ଅବିଚଳିତ ରହିଥାଏ । ଏହା ଦର୍ଶାଇଦିଏ ଯେ ଯେଉଁ ପ୍ରବୃତ୍ତି ଏକଦା ପୁଞ୍ଜିବାଦକୁ ଐତିହାସିକ ପ୍ରଗତିର ଶୀର୍ଷ ସ୍ଥାନରେ ପହଞ୍ଚାଇଥାଏ ତାହାର ସୁସଙ୍ଗତ ଓ ଅବିଚଳ ବିକାଶର ପରିଣାମ ସ୍ୱରୂପ ଏହାର ପତନ ଅବଶ୍ୟମ୍ଭାବୀ ହୋଇଯାଏ ।

---

(୧) କାର୍ଲ ମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ—
**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୨୮, ପୃ: ୨୫୦ ।

(୨) କାର୍ଲ ମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ—
**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୨୮, ପୃ: ୨୫୧ ।

ପୂର୍ବେ ଉଲ୍ଲେଖ କରାଯାଇଛି ଯେ ପୁଞ୍ଜିପତି ଉତ୍ପାଦିକା ଶକ୍ତିମାନଙ୍କର ଅନ୍ତର୍ଗତ ବୃଦ୍ଧାନ୍ତି, କାରଣ ଏହା ଫଳରେ ଆବଶ୍ୟକ ଶ୍ରମର ଅଂଶକୁ ସେ କମେଇ ଦେଇ ପାରିବେ, ଆଉ ଉଦ୍‌ବୃତ୍ତ ଶ୍ରମର ଅଂଶ ବୃଦ୍ଧି କରି ପାରିବେ, ଏବଂ ଏହି ଉପାୟରେ ଉଚ୍ଚତର ଉଦ୍‌ବୃତ୍ତ ମୂଲ୍ୟ ପାଇ ପାରିବେ । ଆରମ୍ଭରେ, ପୁଂଜିବାଦର ପ୍ରାଥମିକ ସ୍ତରମାନଙ୍କରେ, ଉତ୍ପାଦିକା ଶକ୍ତି ଓ ଉଦ୍‌ବୃତ୍ତ ମୂଲ୍ୟ ପ୍ରାୟ ଏକା ବେଗରେ ବୃଦ୍ଧି ପାଆନ୍ତି । ମାତ୍ର କ୍ରମେ କ୍ରମେ, ଉଦ୍‌ବୃତ୍ତ ଶ୍ରମର ଅଂଶ ବଢିବା ସଙ୍ଗେ ସଙ୍ଗେ ତାର ଅସାମଞ୍ଜସ୍ୟ ପରିଲକ୍ଷିତ ହୁଏ ; ଉତ୍ପାଦିକାଶକ୍ତିମାନଙ୍କର ଏକ ବଡ଼ ଧରଣର ଅଭିବୃଦ୍ଧି ହେଲେ ସୁଦ୍ଧା ତାହା ଉଦ୍‌ବୃତ୍ତ ମୂଲ୍ୟର ଅଂଶରେ ଅତି ସାମାନ୍ୟ ବୃଦ୍ଧି ଘଟାଇଥାଏ, କିମ୍ବା ସେ ବୃଦ୍ଧିକୁ କମ୍ ବି କରି ଦେଇପାରେ । ନିମ୍ନଲିଖିତ ପରିସ୍ଥିତି ବିଷୟ କଳନା କରିବା ନିମନ୍ତେ ମାର୍କସ ପାଠକ-ମାନଙ୍କୁ ଆହ୍ୱାନ କରିଛନ୍ତି : "ଯଦି **ପ୍ରୟୋଜନୀୟ ଶ୍ରମ** (ଉତ୍ପାଦନ କ୍ଷମତାର ଏକ ବୃହତ୍ ଅଭିବୃଦ୍ଧି କାରଣରୁ—**ଲେଖକ**) ୧/୧୦୦୦କୁ କମିଯାଇଥାଏ ତାହାହେଲେ ସର୍ବମୋଟ ଉଦ୍‌ବୃତ୍ତ ମୂଲ୍ୟ ହେବ ୯୯୯/୧୦୦୦ । ପୁଣି, ଯଦି ଉତ୍ପାଦନ କ୍ଷମତା ହଜାରେ ଗୁଣ ବଢ଼ିଯାଏ ତାହାହେଲେ **ପ୍ରୟୋଜନୀୟ ଶ୍ରମ** ଏକ ଶ୍ରମ ଦିବସର ୧/୧୦୦୦୦୦୦କୁ ଖସିଯିବ ଏବଂ ମୋଟ ଉଦ୍‌ବୃତ୍ତ ମୂଲ୍ୟର ପରିମାଣ ହେବ ଏକ ଶ୍ରମ ଦିବସର ୯୯୯୯୯୯/୧୦୦୦୦୦୦ ; ...ଏପରି ଭାବରେ ଏହା ୯୯୯/୧୦୦୦୦୦୦କୁ ବୃଦ୍ଧି ପାଇବ... ; ଅର୍ଥାତ୍ ଉତ୍ପାଦନ କ୍ଷମତାର ହଜାରେ ଗୁଣ ଅଭିବୃଦ୍ଧି ଘଟିଲେ ସୁଦ୍ଧା ମୋଟ ଉଦ୍‌ବୃତ୍ତ (ମୂଲ୍ୟ) ୧/୧,୦୦୧ ମଧ୍ୟ ବୃଦ୍ଧି ପାଇବ ନାହିଁ... ।"(୧) ଅନ୍ୟ କଥାରେ କହିଲେ, ଉଦ୍‌ବୃତ୍ତ ମୂଲ୍ୟ କାର୍ଯ୍ୟତଃ ଅପରିବର୍ତ୍ତିତ ରହିବ ; ମନକୁମନ ବୃଦ୍ଧି ପାଉଥିବା ମୂଲ୍ୟ ହୋଇ ଏହା ଆଉ ରହିବ ନାହିଁ, ଅର୍ଥାତ ନିଜତ୍ୱ ହରାଇ ବସିବ !

ଅତଏବ ପୁଞ୍ଜି ଅଧିକ ଶକ୍ତିଶାଳୀ ହେବା ସାଂଗେ ସାଂଗେ, ଆଉ ପ୍ରୟୋଜନୀୟ ଶ୍ରମ ଅଧିକ କମିଯିବା ସାଂଗେ ସାଂଗେ, ଉତ୍ପାଦନ କ୍ଷମତାର ଅଭିବୃଦ୍ଧିର ପ୍ରଭାବ (ପୁଂଜିର ଦୃଷ୍ଟିକୋଣରୁ) ଆନୁପାତିକଭାବେ କମ୍ ହୁଏ । ପରିଣାମରେ ଏପରି ଏକ ଅବସ୍ଥା ନିର୍ଦ୍ଦିଷ୍ଟଭାବେ ସୃଷ୍ଟି ହେବ ଯେତେବେଳେ କି ଉତ୍ପାଦନ କ୍ଷମତାର ବୃଦ୍ଧି ସମ୍ପର୍କରେ ପୁଞ୍ଜି **ଆଉ ଆଗ୍ରହୀ ହେବ ନାହିଁ** । ଏହାର କାରଣ ହେଲା ଏଇ ଯେ ଉତ୍ପାଦନ କ୍ଷମତାର

---

(୧) କାର୍ଲ ମାର୍କସ ଓ ଫ୍ରେଡ଼େରିକ ଏଙ୍ଗେଲସ—**ସଂଗୃହୀତ ଗ୍ରଂଥାବଳୀ**, ଖଣ୍ଡ-୨୮, ପୃଷ୍ଠା : ୨୬୩-୨୬୪ ।

ବିଶାଳକାୟ ଅଭିବୃଦ୍ଧି ଘଟିଲେ ସୁଦ୍ଧା ତାହା କାର୍ଯ୍ୟତଃ କୌଣସି ଉଦ୍‌ବୃତ୍ତ ମୂଲ୍ୟ ସୃଷ୍ଟି କରିବ ନାହିଁ । ଅନ୍ୟକଥାରେ କହିଲେ ପୁଞ୍ଜି ଏବଂ ଉଦ୍‌ବୃତ୍ତ ମୂଲ୍ୟ ଉତ୍ପାଦିକା ଶକ୍ତି-ମାନଙ୍କର ବିକାଶ ପାଇଁ **କାର୍ଯ୍ୟ କରୁଥିବା** ସାମାଜିକ ରୂପ ହୋଇ ଆଉ ରହିବ ନାହିଁ ।

ଏହିପରିଭାବେ ମାର୍କସବାଦ ସାମାଜିକ ଉତ୍ପାଦନର ଅସ୍ଥାୟୀ ଚରିତ୍ର ଜଣାଇ ଦେଲା ଏବଂ ପ୍ରମାଣ କଲା ଯେ ଏହାର ସ୍ଥାନ ଅନ୍ୟ ଏକ ପ୍ରଣାଳୀ ଅବଶ୍ୟ ଗ୍ରହଣ କରିବ ଯାହାର ଲକ୍ଷଣ ହେବ ଉଦ୍‌ବୃତ୍ତ ମୂଲ୍ୟ ପାଇବା ନୁହଁ, ତାହା ହେବ ସମାଜର ଉତ୍ପାଦିକା ଶକ୍ତିମାନଙ୍କର ଓ ସମ୍ପଦର ସିଧାସଳଖ ବିକାଶ ସାଧନ କରିବା, ପ୍ରକୃତ ମୁକ୍ତ ସମୟ ସୃଷ୍ଟି କରିବା ଏବଂ ମଣିଷର ସର୍ବଜନୀନ ଓ ସର୍ବାତ୍ମକ ବିକାଶକୁ ଆଗେଇ ନେବା । ମାର୍କସବାଦ ସେଥି ନିମନ୍ତେ ପୁଞ୍ଜିବାଦର ସମ୍ଭାବନାକୁ ଓ ତା'ର ସ୍ଥିତିର ଐତିହାସିକ ସୀମାକୁ ପ୍ରମାଣ ସହକାରେ ନିର୍ଦ୍ଦିଷ୍ଟ କରି ଚିହ୍ନଟ କରି ଦେଇଥାଏ ।

ମାର୍କସବାଦ ଏହି ପୁଞ୍ଜିବାଦୀ ପ୍ରଣାଳୀର ସୀମାସରହଦ ଜଣାଇ ଦେଉଥିଲେ ସୁଦ୍ଧା ସେଥିରୁ ଏହା ଆଦୌ ବୁଝିବାକୁ ହେବ ନାହିଁ ଯେ ଏ ସୀମାରେ ପହଞ୍ଚିବା ପୂର୍ବରୁ ଅନ୍ୟ ଏକ ପ୍ରଗତିଶୀଳ ସାମାଜିକ ପ୍ରଣାଳୀ ଦ୍ୱାରା ଏହାର ସ୍ଥାନ ଗ୍ରହଣ ପ୍ରଶ୍ନ କଦାପି ଉଠିବ ନାହିଁ । ଓଲଟି ସେ ସୀମାରେ ଉପନୀତ ହେବାର ବହୁ ପୂର୍ବରୁ ଉତ୍ପାଦିକା ଶକ୍ତିମାନଙ୍କର ବିକାଶକୁ ରୋକି ଦେବା ପାଇଁ ପୁଞ୍ଜିବାଦର ପ୍ରବୃତ୍ତି ଦେଖାଯାଏ । ଉତ୍ପାଦିକା ଶକ୍ତିମାନଙ୍କର ବିକାଶ ଏବଂ ଯେଉଁ ସାମାଜିକ ରୂପ ଭିତରେ ତାହା କାର୍ଯ୍ୟକର ହୁଏ ସେଗୁଡ଼ିକ ଭିତରେ ଥିବା ପାର୍ଥକ୍ୟ ମଧ୍ୟ ପୁଞ୍ଜିବାଦ ତାହାର ଅର୍ଥନୈତିକ ସୀମାରେ ପହଞ୍ଚିବାର ବହୁ ଆଗରୁ ସାମାଜିକ ଗଠନବିନ୍ୟାସର ସବୁ ଯୋଗସୂତ୍ରରେ ଓ ଅଂଗରେ ସ୍ୱତଃ ଅନୁଭୂତ ହେବା ଆରମ୍ଭ ହୋଇଯାଏ । ସାମାଜିକୀକରଣ ହୋଇଥିବା ଉତ୍ପାଦନ ଓ ପୁଞ୍ଜିବାଦୀ ଆତ୍ମସାତ୍‌କରଣ ମଧ୍ୟରେ ରହିଥିବା ଦ୍ୱନ୍ଦ୍ୱ "ସର୍ବହରା" ଓ ବୁର୍ଜୁଆର ପାରସ୍ପରିକ ବିରୋଧ ରୂପେ ଆତ୍ମପ୍ରକାଶ କରେ ।"(୧) ଏ ଆତ୍ମପ୍ରକାଶର ଅଭିବ୍ୟକ୍ତି ହେଲା ଭିନ୍ନ ଭିନ୍ନ କାରଖାନାରେ ସାମାଜିକୀକରଣ ହୋଇଥିବା ସଂଗଠନ ଏବଂ ସାମଗ୍ରିକଭାବରେ ଉତ୍ପାଦନ କ୍ଷେତ୍ରର ସାମାଜିକ ଅରାଜକତା ମଧ୍ୟରେ ଦ୍ୱନ୍ଦ୍ୱ ରୂପରେ," 'ଗୃହଦା ତୁଳନାରେ ଅଧିକ

---

(୧) ଫ୍ରେଡ଼ରିକ ଏଙ୍ଗେଲସ—**ଆଣ୍ଟି ଡୁରିଂଗ**, ବିଦେଶୀ ଭାଷା ପ୍ରକାଶନ ସଂସ୍ଥା, ମସ୍କୋ, ୧୯୬୨, ପୃ: ୩୭୧ ।

ଯୋଗାଣ" ହେବା କ୍ଷେତ୍ରରେ, "ଅତ୍ୟଧିକ ଉତ୍ପାଦନ," "ସଙ୍କଟସମୂହ"(୧) ଇତ୍ୟାଦିରେ ।

ଊନବିଂଶ ଶତାବ୍ଦୀର ସାମାଜିକ ଓ ରାଜନୈତିକ ଘଟଣାବଳୀରୁ ସ୍ପଷ୍ଟ ରୂପେ ଜଣାପଡ଼ି ଯାଇଛି କିପରି ଅର୍ଥନୈତିକ ପ୍ଲାବନରେ ପୁଞ୍ଜିବାଦୀ ବ୍ୟବସ୍ଥା ଏ ସମାଜକୁ ବୁଡ଼େଇ ଦେଇଛି । **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର**ରେ ସଙ୍କେତ ଦିଆଯାଇଛି ଯେ "ଆଧୁନିକ ବୁର୍ଜୁଆ ସମାଜର ଉତ୍ପାଦନ ସମ୍ପର୍କ, ବିନିମୟ ଓ ସମ୍ପଦ କ୍ଷେତ୍ରମାନଙ୍କରେ ଯେଉଁ ସ୍ଥିତି ରହିଛି, ଯେଉଁ ସମାଜ ଉତ୍ପାଦନର ଓ ବିନିମୟର ଏପରି ବିଶାଳ ଉପାୟ-ଉପକରଣକୁ ଇନ୍ଦ୍ରଜାଲର ବନ୍ଧନରେ ବାନ୍ଧି ରଖିଛି, ତାହା ହେଉଛି ଏକ ଯାଦୁକର ସଦୃଶ ମନ୍ତ୍ରବଳରେ ପାତାଳପୁରୀରୁ ଡାକିଥିବା ଶକ୍ତିମାନଙ୍କୁ ନିୟନ୍ତ୍ରଣ କରିବାକୁ ଅକ୍ଷମ ।"(୨) ଅର୍ଥାତ୍ "ଉତ୍ପାଦିକା ଶକ୍ତିମାନେ···ପରିସ୍ଥିତିର ଯେଉଁ ବନ୍ଧନ ଦ୍ୱାରା ଛନ୍ଦି ହୋଇ ଯାଇଛନ୍ତି, ତାହାଠାରୁ ଢ଼େର ଅଧିକ କ୍ଷମତାଶାଳୀ । ସେଥି ନିମିତ୍ତ ଏସବୁ ବନ୍ଧନକୁ ଛିନ୍ନ କରିଦେବା ମାତ୍ରେ ସେମାନେ ସମଗ୍ର ବୁର୍ଜୁଆ ସମାଜକୁ ବିଶୃଙ୍ଖଳା ଡାକି ଆଣନ୍ତି ଏବଂ ବୁର୍ଜୁଆ ସମ୍ପଦର ଅସ୍ତିତ୍ୱକୁ ବିପଦାପନ୍ନ କରନ୍ତି । ବୁର୍ଜୁଆ ସମାଜର ଅବସ୍ଥା ସେମାନେ ସୃଷ୍ଟି କରୁଥିବା ସମ୍ପଦ ସମ୍ଭାଳିବା କ୍ଷେତ୍ରରେ ଅତ୍ୟନ୍ତ ସୀମାବଦ୍ଧ ।(୩)

ଏହାର ଅର୍ଥ ହେଲା ଏଇ ଯେ ପୁଞ୍ଜିର ବିକାଶ ହେବା ସଙ୍ଗେ ସଙ୍ଗେ ଏହା ନିଜକୁ ଖଣ୍ଡନ କରେ । ଜନସାଧାରଣଙ୍କୁ ଯାହା କରିବାକୁ ହେବ ତାହା ହେଲା ଏଇ ଯେ ଆଉ ବିଧ୍ୱଂସକାରୀ ପୁଞ୍ଜିବାଦୀ ସାମାଜିକ ଖୋଳପାଟିକୁ ଫିଂଗିଦେବାର ଉପାୟ ସେମାନଙ୍କୁ ବାଛି ନେବାକୁ ପଡ଼ିବ ଯାହାକି କର୍ମରତ ଅଧିକାଂଶଙ୍କ ପକ୍ଷରେ ଅତ୍ୟନ୍ତ ଫଳପ୍ରଦ ; ଉକ୍ତ ଖୋଳପା ଦୀର୍ଘକାଳ ପର୍ଯ୍ୟନ୍ତ ଉତ୍ପାଦିକା ଶକ୍ତିମାନଙ୍କର ବିକାଶରେ ଯେପରି ଅନ୍ତରାୟ ନହୁଏ ତାହା ଦେଖିବାକୁ ହେବ । ଏହା ହିଁ ହୋଇଥାଏ ସମାଜବାଦୀ ବିପ୍ଳବର ଏକ କର୍ତ୍ତବ୍ୟ ।

---

(୧) କାର୍ଲ ମାର୍କସ ଓ ଫ୍ରେଡରିକ ଏଙ୍ଗେଲସ—**ନିର୍ବାଚିତ ଗ୍ରନ୍ଥାବଳୀ** ଖଣ୍ଡ-୩, ପୃ: ୧୫୦ ।

(୨) କାର୍ଲ ମାର୍କସ ଓ ଫ୍ରେଡରିକ ଏଙ୍ଗେଲସ **ସଂଗୃହୀତ ଗ୍ରନ୍ଥାବଳୀ** ଖଣ୍ଡ-୬, ପୃ: ୪୮୯ ।

(୩) ଏକନ୍ତ ଏକନ୍ତ ପୃ: ୪୯୦ ।

**ଇସ୍ତାହାର**ର ପ୍ରଥମ ଯୁକ୍ତିକୁ ଅକାମୀ କରି ଦେବା ନିମନ୍ତେ ତଥା ଇତିହାସର ପ୍ରକୃତ ପ୍ରକ୍ରିୟା ସହିତ ଏହାର ଯେ ସାମଞ୍ଜସ୍ୟ ନାହିଁ ତାହା ପ୍ରମାଣ କରିବା ନିମିତ୍ତ ମାର୍କସବାଦର ବିରୋଧୀମାନେ ଅସଂଖ୍ୟ ଚେଷ୍ଟା କରିଛନ୍ତି, ଆଉ ତାହା ସର୍ବଦା ବିଫଳ ହୋଇଛି । **ଇସ୍ତାହାର**ରେ ପ୍ରଦତ୍ତ ତତ୍ତ୍ୱକୁ ଜୀବନ ହିଁ ସାବ୍ୟସ୍ତ କରିଛି । ଆଉ, ଆମେ ପୂର୍ବେ ଉଲ୍ଲେଖ କରିଛୁ ଯେ ମାର୍କସବାଦର ସମାଲୋଚକମାନେ ଅନ୍ୟ ଏକ ଦୃଷ୍ଟିକୋଣରୁ ଏହାକୁ ଆକ୍ରମଣ କରିବାର ଚେଷ୍ଟା ଏବେ ମଧ୍ୟ ଚଳାଇଛନ୍ତି : ସେମାନେ ଯୁକ୍ତି କରନ୍ତି ଯେ **ଇସ୍ତାହାର**ରେ ପ୍ରଦତ୍ତ ସମସ୍ତ ବିଶ୍ଳେଷଣରେ ଏପରି ଏକ ପରିସ୍ଥିତିର ବର୍ଣ୍ଣନା ଦିଆଯାଇଛି ଯାହା ବହୁ ପୂର୍ବେ ଥିଲି, ଆଉ ବର୍ତ୍ତମାନର ପରିସ୍ଥିତିରେ ଯାହାର କୌଣସି କାର୍ଯ୍ୟକର ପ୍ରୟୋଜନୀୟତା ନାହିଁ ।

କୁହାହେଉଛି ଯେ ଘରୋଇ ସମ୍ପତ୍ତି ବିରୋଧରେ ସମାଜବାଦୀ ବିପ୍ଳବ ହେବ ବୋଲି ମାର୍କସ ଓ ଏଂଗେଲସ ଯାହା କହିଥିଲେ ତାହା ଘଟିବାର ସମ୍ଭାବନା ଆଉ କୁଆଡ଼େ ନାହିଁ, ଯେହେତୁ ତଥାକଥିତ ମ୍ୟାନେଜରମାନଙ୍କ ବିପ୍ଳବ ଏବଂ ପ୍ରଯୁକ୍ତିତନ୍ତ୍ରର ଅଗ୍ରଗତି ଫଳରେ ଘରୋଇ ସମ୍ପତ୍ତି ଲୋପ ପାଇ ଯାଉଛି । ସେମାନଙ୍କ ମତରେ, ମ୍ୟାନେଜର ଓ ଟେକ୍‌ନୋକ୍ରାଟମାନଙ୍କର ସ୍ଥିତି ଅଧିକ ଦୃଢ଼ ହେବା ସାଂଗେ ସାଂଗେ (ଯାହାକି ନିଶ୍ଚିତଭାବରେ ଘଟୁଛି) ଘରୋଇ ସମ୍ପତ୍ତି ଲୋପ ପାଇବା ଓ ଉଭେଇ ଯିବା ଆରମ୍ଭ ହୋଇ ଯାଉଛି—ଯେତେବେଳେ ମ୍ୟାନେଜରମାନେ ହୋଇ ଯାଉଛନ୍ତି ବେତନ-ଭୋଗୀ ଶ୍ରମିକ ଯେଉଁମାନେ ଉପାର୍ଜନ କରୁଥିବା ମଜୁରି ନେଇ ଚଳନ୍ତି, ମୁନାଫାରେ ନୁହେଁ । ସେମାନେ ଏକଥା ପ୍ରମାଣ କରିବାକୁ ଆପ୍ରାଣ ଚେଷ୍ଟା କରୁଛନ୍ତି ଯେ ଘରୋଇ ସମ୍ପତ୍ତି ବ୍ୟବସ୍ଥା କ୍ରମେ ଦୁର୍ବଳ ହୋଇଯାଉଛି ଏବଂ ବିଜ୍ଞାନ, ବିଦ୍ୟାବୁଦ୍ଧି ଓ ଦକ୍ଷତା ଉପରେ ଆଧାରିତ ଏକ ବ୍ୟବସ୍ଥା ତାହାର ସ୍ଥାନ ଗ୍ରହଣ କରୁଛି ।

ଏଭଳି ଯୁକ୍ତିର ଉତ୍ତର କଣ ହୋଇପାରେ ? ପ୍ରଥମତଃ ଏହା ଲକ୍ଷ୍ୟ କରିବା କିଛି କଷ୍ଟ ସାଧ୍ୟ ନୁହେଁ ଯେ ଏଭଳି ତତ୍ତ୍ୱର ଅନୁଗାମୀମାନେ ବିଜ୍ଞାନ, ବିଦ୍ୟାବୁଦ୍ଧି ଓ ଦକ୍ଷତା ସହିତ ଶୋଷଣ ଓ ଘରୋଇ ସମ୍ପତ୍ତିର ବୈସାଦୃଶ୍ୟ ଦେଖୁଛନ୍ତି । ଅଥଚ କାର୍ଯ୍ୟ କ୍ଷେତ୍ରରେ, ଅଧିକ ଦକ୍ଷ ଶୋଷଣ ଦିଗରେ ବିଜ୍ଞାନକୁ ପରିଚାଳିତ କରାଯାଇପାରିବ, ଆଉ ଶ୍ରମିକଠାରୁ ଅର୍ଥ, ଉପକରଣ ଓ ଶକ୍ତି କାଢ଼ିନେବା କାର୍ଯ୍ୟରେ ସର୍ବାଧୁନିକ ଉପାୟ ପ୍ରୟୋଗ ସକାଶେ ଦକ୍ଷତାକୁ ବ୍ୟବହାର କରାଯାଇ ପାରିବ, ଏପରି ଅବସ୍ଥାରେ ଯାହା ଦରକାର

ତାହା ହେଉଛି : ପ୍ରଚଳିତ ସମାଜ ବ୍ୟବସ୍ଥାରେ ବିଜ୍ଞାନର ସ୍ଥାନ ଯାହା ଓ ଯେଉଁ ଭୂମିକା ତାହା ପାଳନ କରେ, ତାହାର ଏକ ନିର୍ଦ୍ଦିଷ୍ଟ ଅନୁଶୀଳନ ।

ବିଜ୍ଞାନ, ବିଦ୍ୟାବୁଦ୍ଧି ଓ ଦକ୍ଷତାକୁ ଆଧୁନିକ ଉତ୍ପାଦନର ମୂଳ ବିଷୟବସ୍ତୁଭାବେ ଗ୍ରହଣ କରି ତାହାର ଏକ ନିର୍ଦ୍ଦିଷ୍ଟ ଅନୁଶୀଳନ କରିବା ପାଇଁ ସେଇ ସଂଖ୍ୟାଲଘୁ, ଗୋଷ୍ଠୀ ସେଇ ସମ୍ଭ୍ରାନ୍ତ ହିଁ—ବର୍ତ୍ତମାନ ସକ୍ଷମ । ବସ୍ତୁତଃ ବିଜ୍ଞାନ ଏକ ଉତ୍ପାଦିକା ଶକ୍ତିରେ ପରିଣତ ହେବାକୁ ଯାଉଛି । କିନ୍ତୁ ଏ ଶକ୍ତି କ'ଣ ଶ୍ରମିକ ହାତକୁ ଯାଉଛି, ତାହାର ନିଜସ୍ୱ ହୋଇ ଯାଉଛି, ଏବଂ ସେ କ'ଣ ଏହାକୁ ବିନିଯୋଗ କରୁଛି ? ହାୟ, ନୁହେଁ । ପୁଞ୍ଜିବାଦୀ ବ୍ୟବସ୍ଥା ଅନ୍ତର୍ଗତ ଅନ୍ୟାନ୍ୟ ସମସ୍ତ ଉତ୍ପାଦିକା ଶକ୍ତିଙ୍କ ଭଳି, ଏହାକୁ ମଧ୍ୟ ଶ୍ରମିକ ବିନିଯୋଗ କରୁନାହିଁ । ଠିକ୍ ଓଲଟା ହେଉଛି । ଏହା ଶ୍ରମିକର ମାଲିକାନାରେ ନାହିଁ, ତାହା ଠାରୁ ଦୂରେଇ ଯାଉଛି । ଆଉ ମାର୍କସଙ୍କର ଏଇ ଉକ୍ତି ମଧ୍ୟ ଆଜି ସଂପୂର୍ଣ୍ଣ ସତ୍ୟ ସାବ୍ୟସ୍ତ ହୋଇଛି ଯେ ବିଜ୍ଞାନର ଶକ୍ତି ଶ୍ରମିକଠାରୁ ପୃଥକ ରହିଛି, ତାହାର ବିରୋଧୀ ହୋଇଛି ଓ ତାହା ଉପରେ ଆଧିପତ୍ୟ ଜାହିର କରୁଛି ।

ପ୍ରକୃତ କଥା ଏଇ ଯେ ଟେକ୍‌ନୋଲୋଜି—ପ୍ରଯୁକ୍ତିବିଦ୍ୟା—ଉତ୍ପାଦନ ଓ ପଟୁତା କ୍ଷେତ୍ରରେ ଦକ୍ଷତା ମାତ୍ର ହିଁ ନୁହେଁ । ଏହା ଗୋଟିଏ ପ୍ରକାରର ସମ୍ପର୍କ ସମ୍ପତ୍ତି । ଏ କ୍ଷେତ୍ରରେ ଏହା ହେଉଛି ଜ୍ଞାନ, ଶିକ୍ଷା, ତଥ୍ୟ ଓ ପରିଚାଳନାଗତ ବିଶେଷ କୌଶଳର ମାଲିକ । ଶ୍ରମିକକୁ ଅକ୍ଷମ କରି ଦେଉଥିବା ଶ୍ରମର ବିଭାଜନକୁ ଏହା ଦୂର କରେ ନାହିଁ । ବରଂ ଏହା ତା'ର ଏକ କଡ଼ାକଡ଼ି ରୂପ । ଏହା ପ୍ରତ୍ୟକ୍ଷ ଶ୍ରମ ଠାରୁ ପରିଚାଳନାଗତ ଶ୍ରମକୁ ପୃଥକ କରେ ।

ଯେଉଁମାନେ ବିଶ୍ୱାସ କରନ୍ତି ଯେ ପ୍ରଯୁକ୍ତିତନ୍ତ୍ରର ସାମାଜିକ ନିର୍ଯ୍ୟାସକୁ "ବୁଦ୍ଧିଜୀବୀ ଗୋଷ୍ଠୀ" ଅଥବା "ବୈଜ୍ଞାନିକ, ପ୍ରଯୁକ୍ତିଗତ ଓ କଳାତ୍ମକ ବୁଦ୍ଧିଜୀବୀ ସମ୍ପ୍ରଦାୟ" ଭଳି ଅସ୍ପଷ୍ଟ ପଦାବଳୀ ଦ୍ୱାରା ପ୍ରକାଶ କରାଯାଇ ପାରିବ ସେମାନେ ଏକେବାରେ ଭୁଲ କରୁଛନ୍ତି । ସାମାଜିକ ଓ ଶ୍ରେଣୀ ଦୃଷ୍ଟିକୋଣରୁ ଯେଉଁମାନଙ୍କର ଏକତା ବହୁକାଳରୁ ନଷ୍ଟ ହୋଇ ଯାଇଛି, ବୌଦ୍ଧିକ ଶ୍ରମରେ ନିଯୁକ୍ତ ସେଇ ଲୋକମାନଙ୍କ ପାଇଁ ଏ ଧାରଣା ସୃଷ୍ଟି ହୋଇଛି । "ବୁଦ୍ଧିଜୀବୀ ସମ୍ପ୍ରଦାୟ"ର ଏକତା ସଂପୂର୍ଣ୍ଣ ବାହ୍ୟିକ, ଉପର ଠାଉରିଆ ଓ ଅଧିକରୁ ଅଧିକ ଅଳୀକ, ବିଭ୍ରାନ୍ତିକର । ମୁଖ୍ୟ କର୍ମାଧ୍ୟକ୍ଷ ଓ ତାଙ୍କ ହୁକୁମରେ ଯେଉଁମାନେ ଚଳନ୍ତି ସେମାନଙ୍କ ଭିତରର ସଂଘର୍ଷକୁ ବିଶ୍ଳେଷଣ କରିବା ମାତ୍ରେ ଏଇ ବିଭ୍ରାନ୍ତି ଦୂର ହୋଇଯିବ । ଏ ବିଷୟରେ ବୁଦ୍ଧିଜୀବୀମାନେ ସ୍ପଷ୍ଟ ରୂପେ ବିଭକ୍ତ : ମୁଖ୍ୟ

କର୍ମାଧ୍ୟକ୍ଷବୃନ୍ଦ—ଯେଉଁମାନେ ଗୋଟିଏ ମାତ୍ର ଶାସକ ଶ୍ରେଣୀର ସମ ସ୍ଥାନୀୟ ସଦସ୍ୟ—ହେଉଛନ୍ତି ସଂଖ୍ୟାଲଘୁ, ଆଉ ଆଶ୍ରିତ ଗୋଲାମମାନେ, ଯେଉଁମାନେ ହେଉଛନ୍ତି ଶୋଷିତ ଶ୍ରେଣୀର ଅଂଶବିଶେଷ, ସେମାନେ ହେଲେ ସଂଖ୍ୟାଗରିଷ୍ଠ ।

ଟେକନୋକ୍ରାଟମାନେ ଶାସକ ଶ୍ରେଣୀର ଅଂଶବିଶେଷ ବୋଲି ଦାବୀ କରିବା ସଙ୍ଗେ ସଙ୍ଗେ ମାର୍କସବାଦୀମାନେ ପରିସ୍ଥିତିର ନୂତନତ୍ୱ ବିଷୟ ବିଚାରକୁ ନିଅନ୍ତି । ଏ ବିଷୟ ମଧ୍ୟ ବିଚାର କରନ୍ତି ଯେ ଟେକନୋକ୍ରାଟମାନଙ୍କର ଅଭିବୃଦ୍ଧି ଫଳରେ ବିପ୍ଳବୀ ଗଣତାନ୍ତ୍ରିକ ଆନ୍ଦୋଳନ ନିମନ୍ତେ ଅଧିକ ସମ୍ଭାବନା ସୃଷ୍ଟି ହୋଇଛି । ଏହି ଅଭିବୃଦ୍ଧି କାରଣରୁ ଶୋଷଣର ପରିସର ସମ୍ପ୍ରସାରିତ ହୋଇଛି ଓ ଶାସକ ସମ୍ଭ୍ରାନ୍ତ ଗୋଷ୍ଠୀର ସଂଖ୍ୟାଗତ ଶକ୍ତି ବୃଦ୍ଧିପାଇଛି ସେତିକି ନୁହେଁ, "ପରନ୍ତୁ ତା' ସହିତ ଏହା ନିଜର ଖଣ୍ଡନକୁ ମଧ୍ୟ ଡାକି ଆଣିଛି—ଉତ୍ପାଦନ ଓ ଉତ୍ପାଦିକା ଶକ୍ତିମାନଙ୍କର କ୍ରମାଗତ ବୃଦ୍ଧି ଏବଂ ସଂପ୍ରସାରିତ ଜ୍ଞାନ । ଟେକନୋକ୍ରାଟମାନେ ସେମାନଙ୍କ ନିଜ ନିର୍ଯ୍ୟାସ କାରଣରୁ ହିଁ ଦୀର୍ଘ କାଳଯାଏ ଏକ ସଂକୀର୍ଣ୍ଣ, ଆବଦ୍ଧ ଜାତି ହୋଇ ରହି ପାରିବେ ନାହିଁ । ଯେଉଁ ଆଧୁନିକ ଉତ୍ପାଦନ ବିଶାଳ ଆକାରରେ ବିସ୍ତାର ଲାଭ କରୁଛି ଏବଂ ଯାହାର ଏକ ଦୃଢ଼ ବୈଜ୍ଞାନିକ ଓ କାରିଗରୀ ଭିତ୍ତି ରହିଛି ତାହା ଅଧିକରୁ ଅଧିକ ସଂଖ୍ୟାରେ ଉଚ୍ଚ କୁଶଳତା ସମ୍ପନ୍ନ ବିଶେଷଜ୍ଞ ଦରକାର କରେ । ଏପରି ସ୍ଥଳେ, ବିଜ୍ଞାନ ଓ ଉତ୍ପାଦନକୁ ଆଗେଇ ନେବା ସମୟରେ, ଯେଉଁ ପ୍ରଯୁକ୍ତିତନ୍ତ୍ର ଆଖିରେ ଉତ୍ପାଦନ ହିଁ ସର୍ବଶେଷ କାମ ତାହା ପ୍ରଯୁକ୍ତିଗତ ବିଶେଷଜ୍ଞମାନଙ୍କର ସଂଖ୍ୟା ବୃଦ୍ଧି ଆବଶ୍ୟକ କରେ । ଏହା ଏକ ବିରୋଧାଭାସ ଯେ ଜ୍ଞାନ ଓ ତଥ୍ୟ ଉପରେ ଏକାଧିପତ୍ୟ ବିସ୍ତାର କରିଥିବା ପ୍ରଯୁକ୍ତିତନ୍ତ୍ରୀ-ମାନେ, ଆପଣାର କ୍ରିୟାକର୍ମ ଦ୍ୱାରା ତାହାକୁ ନଷ୍ଟ କରନ୍ତି । ଅମଲାତାନ୍ତ୍ରିକ ଓ ଓ ଘରୋଇ-ମାଲିକ ସ୍ୱାତନ୍ତ୍ର୍ୟର କଠୋର ବ୍ୟୂହ ଏଇଭଳି ଭାଙ୍ଗିଯାଏ ।

ପୁଞ୍ଜିବାଦକୁ ପୂର୍ଣ୍ଣ ଜୀବନ ଦାନରେ ସାହାଯ୍ୟ କରିବା ନିମିତ୍ତ ଉଦାରପନ୍ଥୀ-ବୁର୍ଜୁଆ ଓ ସଂସ୍କାରପନ୍ଥୀ-ସୁବିଦାବାଦୀ "ଚକଚ୍ରକମାନେ" ଯେଉଁ ବାଟ ବତେଇଛନ୍ତି ତାହା ମଧ୍ୟ ସଫଳ ହେବ ନାହିଁ : ଅର୍ଥନୈତିକ ଜୀବନରେ ରାଷ୍ଟ୍ରର ଭୂମିକା ବୃଦ୍ଧି କରିବା (ଯେପରି କେଇନସବାଦୀମାନେ ପ୍ରସ୍ତାବ କରନ୍ତି) ଅଥବା, ଅନ୍ୟ ପକ୍ଷରେ ଅର୍ଥନୀତିରେ ରାଷ୍ଟ୍ରର ହସ୍ତକ୍ଷେପକୁ ହ୍ରାସ କରିବା ଦ୍ୱାରା (ଯେପରି ପରାମର୍ଶ ନବ୍ୟ-ଉଦାରପନ୍ଥୀମାନେ ଦିଅନ୍ତି) ; ସମାଜ ନିଜେ ଅଂଶୀଦାର ହେବା ନୀତିର ପ୍ରବର୍ତ୍ତନ (ବୁର୍ଜୁଆମାନେ ଶ୍ରମିକ-ମାନଙ୍କ ପ୍ରତି ଯେଉଁ ନୀତି ଅନୁସରଣ କରିବେ) ଅଥବା ଶ୍ରମିକମାନଙ୍କ ଉପରେ ଗୁପ

ବୃଦ୍ଧି କରିବାର ମତ ; ଅର୍ଥନୈତିକ କ୍ରିୟାକଳାପକୁ ଜାତୀୟ ସୀମା ଭିତରେ ଆବଦ୍ଧ ରଖିବା ଅଥବା ତାହାକୁ ଟ୍ରାନ୍‌ସନ୍ୟାସନାଲ ଆଡ଼କୁ ଠେଲିଦେବା ; ଯେଉଁ ଉତ୍ପାଦନ ଯଥେଷ୍ଟ ଲାଭଦାୟକ ନୁହେଁ ତାହା କମାଇଦେବା ଅଥବା ଅଧିକତର ମୁନାଫା ଅର୍ଜନ କରିବା ଲକ୍ଷ୍ୟରେ ଯୁଦ୍ଧ ଶିଳ୍ପକୁ ସଂପ୍ରସାରଣ କରିବା… । ଏ ସମସ୍ତ ଆରୋଗ୍ୟ ବ୍ୟବସ୍ଥା ନିରର୍ଥକ । ଫରାସୀ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସମ୍ପାଦକ ଜର୍ଜ ମାରସାଇସ ତାଙ୍କ ପୁସ୍ତକ "ଆଜିର ଆଶା"ରେ ଲେଖିଛନ୍ତି କି ପୁଞ୍ଜିବାଦୀ ଗୋଷ୍ଠୀଗୁଡ଼ିକର ନେତାମାନେ ସେମାନଙ୍କ ଅକ୍ତିଆରରେ ଥିବା ଉପାୟଉପକରଣକୁ ନିୟନ୍ତ୍ରଣ କରିବା ପାଇଁ ଅକ୍ଷମ : ମାରସାଇସ ଦର୍ଶାଇଛନ୍ତି ଭଳି ଗୋଥେଙ୍କର ଅଧା ତାଲିମ ପାଇଥିବା ଯାଦୁକରଙ୍କ ସଦୃଶ ସେମାନେ ହୋଇଛନ୍ତି ; ଆଉ ଯେଉଁ ପ୍ରତିକାରମାନଙ୍କର ପ୍ରଚାର ସେମାନେ କରନ୍ତି ସେସବୁ ସେମାନଙ୍କ ପକ୍ଷରେ ବିଷ ବୋଲି ପ୍ରମାଣିତ ହୋଇଛି ।

ଶହେ ବର୍ଷରୁ ଅଧିକ କାଳ ପୂର୍ବେ ମାର୍କସ ପୁଞ୍ଜିବାଦର ଦ୍ୱନ୍ଦ୍ୱାତ୍ମକ କ୍ଷୟର ଭବିଷ୍ୟବାଣୀ କରିଥିଲେ । ସେ ଦର୍ଶାଇଥିଲେ ଯେ ପୁଞ୍ଜିର ଯେଉଁ ବାଧ୍ୟତାମୂଳକ ବିନାଶ ଘଟେ—ଯାହାକି ତାହାର ବାହ୍ୟ ସମ୍ପର୍କର କାରଣ ଯୋଗୁଁ ନହୋଇ ତା'ର ଆତ୍ମ-ସଂରକ୍ଷଣର ଏକ ଅବସ୍ଥାଭାବେ ଆସେ—ତାହା ହେଉଛି ସର୍ବାଧିକ ଉଲ୍ଲେଖଯୋଗ୍ୟ ଗୋଟିଏ ରୂପ । ଅଧିକ ଫଳପ୍ରଦ ସାମାଜିକ ଉତ୍ପାଦନର ଏକ ରୂପ ତାହାର ସ୍ଥାନ ଗ୍ରହଣ କରେ ।

ଏହା ହିଁ ହେଲା ଏ ତତ୍ତ୍ୱର ଭବିଷ୍ୟବାଣୀ । ତେବେ ୧୯୭୦ ଦଶକ ଓ ୧୯୮୦ ଦଶକମାନଙ୍କର ସାମାଜିକ ଘଟଣା ପ୍ରବାହରୁ କଣ ଦେଖାଯାଏ ? ଏଥିରୁ ପ୍ରମାଣିତ ହୁଏ ଯେ କମ୍ୟୁନିଷ୍ଟମାନେ ଯେଉଁମାନେ କି, ଉଦାରପନ୍ଥୀ-ବୁର୍ଜୁଆ ଓ ସାମାଜିକ-ସଂସ୍କାରପନ୍ଥୀ ତତ୍ତ୍ୱଗୁଡ଼ିକର ପ୍ରବକ୍ତାମାନଙ୍କଠାରୁ ବିପରୀତ, ସେମାନେ ଭବିଷ୍ୟବାଣୀ କରିଥିଲେ କି ୧୯୬୦ ଦଶକ ଓ ୧୯୭୦ ଦଶକମାନଙ୍କରେ ପୁଞ୍ଜିବାଦୀ ବ୍ୟବସ୍ଥାର ଘୋର ସଙ୍କଟ ସୃଷ୍ଟି ହେବ, ସେମାନେ ଠିକ କଥା କହିଥିଲେ । ୧୯୬୯-୧୯୭୦, ୧୯୭୪-୧୯୭୫ ଓ ୧୯୭୯-୧୯୮୨ର ସଙ୍କଟଗୁଡ଼ିକରୁ ମାର୍କସବାଦର ଆବିଷ୍କାର-ମୂଳକଶକ୍ତି ସତ୍ୟ ବୋଲି ସ୍ପଷ୍ଟ ପ୍ରମାଣିତ ହୋଇଛି । (ଏହା ଉଲ୍ଲେଖ କରିବା ପ୍ରୟୋଜନ ଯେ କମ୍ୟୁନିଷ୍ଟମାନେ କେବଳ ଆଉ ଏକ ଅର୍ଥନୈତିକ ସଙ୍କଟ କଥା ଭବିଷ୍ୟବାଣୀ କରି ନ ଥିଲେ, ଏକ ନୂତନ ଓ ଅଭୂତପୂର୍ବ କଠୋର ଧରଣର ସଙ୍କଟ କଥା କହିଥିଲେ ।)

ଏଣୁ ୧୯୭୦ ଦଶକର ସାମାଜିକ ଘଟଣାପ୍ରବାହ କମ୍ୟୁନିଷ୍ଟମାନଙ୍କର ଭବିଷ୍ୟ-ବାଣୀକୁ ସତ୍ୟସାବ୍ୟସ୍ତ କରିଛି ; ଏବଂ ଉକ୍ତ ଦଶନ୍ଧିରେ ସଙ୍କଟର ବିଶେଷଧାରା ସମ୍ପର୍କରେ ସେମାନଙ୍କର ବିଶ୍ଳେଷଣ ଆଧୁନିକ ପୁଂଜିବାଦର ତତ୍ତ୍ୱକୁ ଉଲ୍ଲେଖନୀୟଭାବେ ସମୃଦ୍ଧ କରିବା ସମ୍ଭବପର କରିଥିଲା, ଆଉ ତାହାର ପରିଣାମ ସ୍ୱରୂପ, ବୈପ୍ଳବିକ ତତ୍ତ୍ୱର ଅନ୍ୟାନ୍ୟ ଅନେକ ବିଭବ ସମୃଦ୍ଧ ହୋଇଥିଲା । ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ତତ୍ତ୍ୱ ସମ୍ବନ୍ଧୀୟ ପ୍ରସ୍ତାବନାଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରଥମତଃ, କମ୍ୟୁନିଷ୍ଟମାନେ ଏଇ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ **ପୁଞ୍ଜିବାଦର ସଂକଟ ହେଉଛି ଚରିତ୍ର ଦୃଷ୍ଟିରୁ ନିରବଚ୍ଛିନ୍ନ ।** ଅର୍ଥନୈତିକ ପରିସ୍ଥିତିରେ ସ୍ୱଳ୍ପକାଳ ପାଇଁ ହେଉଥିବା ଉନ୍ନତି ପୁଞ୍ଜିବାଦୀ ଉତ୍ପାଦନରେ ସମ୍ପୂର୍ଣ୍ଣ ପ୍ରାଣ ସଞ୍ଚାର କରି ପାରିବ ନାହିଁ । ଇଟାଲୀୟ କମ୍ୟୁନିଷ୍ଟ ପାର୍ଟିର ୧୪ତମ କଂଗ୍ରେସରେ ଉଲ୍ଲେଖ କରାଯାଇଥିଲା ଯେ "ଯେଉଁ ସଙ୍କଟ ସମଗ୍ର ପୁଞ୍ଜିବାଦୀ ବ୍ୟବସ୍ଥାକୁ ଏବଂ ଭିନ୍ନ ଭିନ୍ନ ପୁଞ୍ଜିବାଦୀ ଦେଶମାନଙ୍କୁ ଗ୍ରାସ କରିଛି ତାହା ହେଉଛି ମୌଳିକ, ଗଠନବିନ୍ୟାସଗତ ଚରିତ୍ରର । ଅର୍ଥନୈତିକ ପରିସ୍ଥିତିରେ ସମ୍ଭାବ୍ୟ ଉନ୍ନତି ସତ୍ତ୍ୱେ ଏ ସଙ୍କଟ ଆହୁରି ବଢ଼ିବ ଓ ଉତ୍କଟ ହେବ ।"

ଜର୍ମାନ ସୋସାଲିଷ୍ଟ ୟୁନିଟ ପାର୍ଟିର ୯ମ କଂଗ୍ରେସରେ ଲିପିବଦ୍ଧ ହୋଇଥିଲା ଯେ ଆଧୁନିକ ସଙ୍କଟ ହେଉଛି ପୁଞ୍ଜିବାଦର ସାଧାରଣ ଓ ଚକ୍ରାକାର ସଙ୍କଟସମୂହର ବିଶେଷ ଏକ ମିଳନ । ଅଧିକନ୍ତୁ, ଫରାସୀ କମ୍ୟୁନିଷ୍ଟ ପାର୍ଟିର ୨୪ତମ କଂଗ୍ରେସରେ ଦର୍ଶାଯାଇଥିଲା ଯେ ଆଧୁନିକ ସଙ୍କଟ କେବଳମାତ୍ର ଗୋଟାଏ ଅର୍ଥନୈତିକ ସଙ୍କଟ ନୁହେଁ ; ଏହା ଏକ "ସର୍ବଗ୍ରାସୀ ସଙ୍କଟ ଯାହା ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ଜୀବନ, ମତାଦର୍ଶ, ସଂସ୍କୃତି, ମୂଲ୍ୟବୋଧ ଓ ନୈତିକତାକୁ ପରିବ୍ୟାପ୍ତ ହୋଇଛି ।" ଏହାର ପ୍ରମାଣ ହେଉଛି ଇଟାଲୀ, ଜାପାନ, ସ୍କାଣ୍ଡିନେଭୀୟ ଦେଶପୁଂଜ, ଜର୍ମାନ ଫେଡେରାଲ ପ୍ରଜାତନ୍ତ୍ର ଓ ଆମେରିକା ଯୁକ୍ତରାଷ୍ଟ୍ରର ସରକାରମାନଙ୍କର ଘନ ଘନ ଭଙ୍ଗାଗଢ଼ା ; ରାଜନୈତିକ ଗୁଣ୍ଡାରାଜ, ଚକ୍ରାନ୍ତ, ବେପରୁଆ ବ୍ୟୟ, ଏବଂ ଅର୍ଥନୈତିକତାର ଏକ ବାୟୁମଣ୍ଡଳ, କମ୍ୟୁନିଷ୍ଟମାନେ କହିଲା ଭଳି ଯାହା ରୋମୀୟ ଦାସ-ମାଲିକ ସମାଜର କ୍ଷୟିଷ୍ଣୁଯୁଗକୁ ସ୍ମରଣ କରାଇ ଦିଏ ; ସଂସ୍କୃତି ଓ କଳାର ସଙ୍କଟ—ଯାହାକୁ ସୋଭିଏତ କବି ଆନ୍ଦ୍ରେଇ ଭୋଜନେସେନସ୍କି କହୁଥିଲେ "ଆତ୍ମାର ଅଶ୍ଳୀଳତା" ।

ବର୍ତ୍ତମାନ ଦଶକର ସମାଜ ବିକାଶ କ୍ଷେତ୍ରରେ ଦୁଇଟି ସମସ୍ୟା ମଧ୍ୟ ରହିଛି ଯାହାକୁ

ଅନେକ ଲୋକ ଜାଣନ୍ତି ଓ ସେଥିପାଇଁ ଚିନ୍ତିତ। ହେଲେ, କେବଳ ମାତ୍ର କମ୍ୟୁନିଷ୍ଟ-ମାନେ ହିଁ ସେହି ସମସ୍ୟା ଦୁଇଟିକୁ ବାହାର କରିପାରିଲେ ଏବଂ ଦେଖାଇ ଦେଇଥିଲେ ଯେ ତାହା ହେଉଛି ଆଧୁନିକ ପୁଞ୍ଜିବାଦର ସଙ୍କଟର ପରିଣତି, ଏବଂ ସେହି ସଙ୍କଟର ଏକ ବଡ଼ ଧରଣର ଲକ୍ଷଣ।

ଫିନଲାଣ୍ଡ କମ୍ୟୁନିଷ୍ଟମାନଙ୍କର ଅନ୍ୟତମ ନେତା ତାଇଷ୍ଟୋ ସିନିସାଲୋ ପ୍ରଥମ ସମସ୍ୟାଟିକୁ ନିମ୍ନଲିଖିତ ମତେ ନିର୍ଦ୍ଦିଷ୍ଟ ରୂପଦାନ କରିଥିଲେ : "ବିକାଶଶୀଳ ଦେଶ-ମାନେ କପରି ନିଜ ଗୋଡ଼ରେ ଠିଆ ହେବେ ?" ସର୍ବାଧିକ ମୁନାଫା ନିମନ୍ତେ ପ୍ରତି-ଦ୍ୱନ୍ଦ୍ୱିତାର ପରିଣାମରେ **ଆଗୁଆ ପୁଂଜିବାଦୀ ଦେଶମାନଂକର ମନୋପୋଲି-ଗୁଡ଼ିକ ଦ୍ୱାରା ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାର ଜନ-ସାଧାରଣଂକର ଲୁଣ୍ଠନ।** ଏହି ପ୍ରକ୍ରିୟା ଏ ଯାଏଁ ବହୁ ଦଶନ୍ଧି ଧରି ଚାଲିଲାଣି। ଆଜି ଆଗୁଆ ପୁଞ୍ଜିବାଦୀ ଦେଶମାନଙ୍କ ପାଖରେ ବିକାଶଶୀଳ ଦେଶମାନଙ୍କର ଋଣର ଭାର ଏକ ହଜାର କୋଟି ଡଲାରର ଏକ ଅକଳନୀୟ ସ୍ତରରେ ପହଞ୍ଚିଲାଣି। ସେସବୁର ସୁଧ ବାବଦକୁ ବ୍ୟୟ ଏଣେ ବିକାଶଶୀଳ ଦେଶମାନଙ୍କର ଜାତୀୟ ବଜେଟର ଏକ ବିରାଟ ଅଂଶ ହୋଇଯାଇଛି। ଆଜି ସମସ୍ତେ ଏହା ସଫା ଦେଖି ପାରିଲେଣି ଯେ ଏ ଋଣ କଦାପି ପରିଶୋଧ କରାଯାଇ ପାରିବ ନାହିଁ। ବିକାଶଶୀଳ ଦେଶମାନେ କେତେ ନିର୍ଭରଶୀଳ ଓ ଅନଗ୍ରସର ତା'ର ସୂଚନା ଋଣର ଏଇ ଆକାରରୁ ଜଣାଯାଏ। "ବିଜ୍ଞ" (ଏନଲାଇଟନେଡ) ବୁର୍ଜୁଆ ତତ୍ତ୍ୱବିତ୍‌ମାନେ ଏବଂ ସୋସାଲ ଡେମୋକ୍ରାଟିକ ତତ୍ତ୍ୱର ଅନୁଗତବୃନ୍ଦ, ଯେଉଁ-ମାନେ "ଆପଣା ସଭ୍ୟ" ଦେଶମାନଙ୍କର ଶାନ୍ତି, ସ୍ଥିରତା ଓ ପ୍ରଧାନତଃ ଭୌତିକ ସୁଖ-ସୁବିଧା ପାଇଁ ଚିନ୍ତିତ, ସେମାନେ ବିକାଶଶୀଳ ଦେଶଗୁଡ଼ିକର ଜନସାଧାରଣଙ୍କ ଉପରେ ଏ ଦୋଷ ଲଦି ଦେଉଛନ୍ତି ଏହା କହି ଯେ ସେମାନେ "କଠିନ ପରିଶ୍ରମ କରୁନାହାନ୍ତି ଏବଂ ସେଥିରେ ଅଭ୍ୟସ୍ତ ନୁହନ୍ତି", ଆଉ ପ୍ରସ୍ତାବ କରୁଛନ୍ତି ଯେ ସେମାନେ ନିଜେ ନିଜେ ଏ ଗଭୀର ଐତିହାସିକ ଗର୍ତ୍ତ ଭିତରୁ ବାହାରି ଆସିବା ଉଚିତ। କମ୍ୟୁନିଷ୍ଟମାନେହିଁ କେବଳ ଏ ଜାତିମାନଙ୍କର ଅନଗ୍ରସରତାର ଅସଲ କାରଣ ଜଣାଉଛନ୍ତି—ଅର୍ଥାତ ବିଶ୍ୱ ପୁଞ୍ଜିବାଦ ଦ୍ୱାରା ତୃତୀୟ ବିଶ୍ୱର ଦେଶମାନଙ୍କରେ ଲୁଣ୍ଠନ ଓ ଶୋଷଣ। କମ୍ୟୁନିଷ୍ଟ-ମାନେହିଁ କେବଳ, ଅନଗ୍ରସରତା ସମସ୍ୟାର ଏକ ସ୍ୱାଧୀନ ସମାଧାନର ବାସ୍ତବବାଦୀ ସୂତ୍ର ଜାଣିଛନ୍ତି। ତାହା ହେଲା ସାମ୍ରାଜ୍ୟବାଦୀ ଅର୍ଥନୈତିକ ପ୍ରଭାବକୁ ବିଲୋପ କରିବା ଏବଂ ତାହା ପରିବର୍ତ୍ତେ ବିଶ୍ୱ ଅର୍ଥନୀତିରେ ସମାନତାର ଗଣତାନ୍ତ୍ରିକ ନୀତି ପ୍ରଚଳନ କରିବା,

ଆଉ ନବ ସ୍ୱାଧୀନ ଦେଶମାନଙ୍କୁ ସର୍ବାତ୍ମକ ସାହାଯ୍ୟ ପ୍ରଦାନ କରିବା । ପୁଣି ସବୁଠୁ ଗୁରୁତ୍ୱପୂର୍ଣ୍ଣ ହେଲା, ଅଧିକ ସହାୟତା ଲାଗି ଡାକ ଦେବା ସଙ୍ଗେ ସଙ୍ଗେ କମ୍ୟୁନିଷ୍ଟମାନେ ସର୍ବଦା ଏକଥା ଉପରେ ଜୋର ଦିଅନ୍ତି ଯେ ଏ ସହାୟତାକୁ ଦୟାଦାକ୍ଷିଣ୍ୟ ବା ବଦାନ୍ୟତାଭାବେ ବିଗ୍ରହିବାକୁ ହେବ ନାହିଁ, ବୁଝିବାକୁ ହେବ ଯେ ଏହା ହେଉଛି ପୁଞ୍ଜିବାଦୀ ଦେଶମାନଙ୍କ ଉପରେ ଥିବା ଐତିହାସିକ ଋଣ, ଏବଂ ପରିଶେଷରେ ନିଜ ସ୍ୱାର୍ଥକୁ ଠିକ୍ ରୂପେ (ଐତିହାସିକ ଆଭିମୁଖ୍ୟରୁ) ବୁଝିବା ନିମନ୍ତେ ଏହା ହେବ ଏକ ଚେଷ୍ଟା । କାରଣ, ଡାଇକ୍ଟୋ ସିନସାଲେ ସଠିକ୍‌ଭାବେ କହିଲା ଭଳି, ଯଦି ଉନ୍ନତ ଦେଶମାନେ ବିକାଶଶୀଳ ଦେଶମାନଙ୍କର ସମସ୍ୟାକୁ ସମାଧାନ କରିବା କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ ନ କରନ୍ତି ଏବଂ ସେମାନଙ୍କର ନ୍ୟାଯ୍ୟ ଦାବୀଗୁଡ଼ିକ ପ୍ରତି ଯଦି ସମର୍ଥନ ନ ଜଣାନ୍ତି, ତାହାହେଲେ ବିକାଶଶୀଳ ଦେଶମାନେ "ଏକପ୍ରକାର ଅପ୍ରୀତିକର" ଢଙ୍ଗରେ ଉନ୍ନତ ଦେଶମାନଙ୍କୁ ଆଧୁନିକ ଜଗତର ବାସ୍ତବତା ସମ୍ପର୍କରେ ଉଚିତ ଶିକ୍ଷା ଦେବେ ।

ନିଜ ନିଜ ଦେଶରେ ସାମ୍ରାଜ୍ୟବାଦ ଉପରେ ଆକ୍ରମଣ ଚଳାଇବା ନିମନ୍ତେ, ତା'ର କର୍ମକ୍ଷେତ୍ରକୁ ସଙ୍କୁଚିତ କରି ଦେବା ନିମନ୍ତେ ଏବଂ ବିକାଶଶୀଳ ଦେଶମାନଙ୍କ ସହିତ ମିଳିମିଶି ସେମାନଙ୍କର ବିକାଶ ସମସ୍ୟାର ସମାଧାନ ନିମନ୍ତେ କମ୍ୟୁନିଷ୍ଟମାନେ ବିଭିନ୍ନ ଜାତିମାନଙ୍କୁ ଅବିଚଳଭାବେ ଆହ୍ୱାନ ଦିଅନ୍ତି । "ମିଳିମିଶି" ଏଥି ନିମନ୍ତେ ଯେ ଏସବୁ କେବଳ ବିକାଶଶୀଳ ଦେଶମାନଙ୍କର ସମସ୍ୟା ନୁହେଁ, ଉନ୍ନତ ଦେଶମାନଙ୍କର ମଧ୍ୟ । ଆଉ ଏ କାର୍ଯ୍ୟ ଯେତେ ଶୀଘ୍ର ଆରମ୍ଭ କରାଯାଏ ସେତେ ମଙ୍ଗଳ, କାରଣ ତା' ନହେଲେ ପୁଞ୍ଜିବାଦୀ ଦେଶମାନେ ଏକ କଠୋର ଓ ଐତିହାସିକଭାବେ "ଏକପ୍ରକାର ଅପ୍ରୀତିକର" ନ୍ୟାୟସଙ୍ଗତ ଶିକ୍ଷା ପାଇବେ ।

ପୁଞ୍ଜିବାଦର ସମସାମୟିକ ସଙ୍କଟର ଯେଉଁ ଅନ୍ୟ ଏକ ଲକ୍ଷଣ ସମ୍ପର୍କରେ କମ୍ୟୁନିଷ୍ଟମାନେ ଉଲ୍ଲେଖ କରନ୍ତି, ଆଉ ଯାହାକି ତାର ସର୍ବାଧିକ ବିପଜ୍ଜନକ ଲକ୍ଷଣ, ତା'ହେଲା **ଯୁଦ୍ଧଶିଳ୍ପକୁ କ୍ରମାଗତ ବିସ୍ତାର କରିବା ଜରିଆରେ ଉତ୍ପାଦନ ପ୍ରକ୍ରିୟାକୁ ବଞ୍ଚାଇ ରଖିବା ନିମନ୍ତେ ପୁଞ୍ଜିର ପ୍ରଚେଷ୍ଟା ।** ଏହିପରିଭାବେ ନିର୍ଭରଯୋଗ୍ୟ ବିକ୍ରି ତଥା ବିପୁଳ ମୁନାଫାର ଗ୍ୟାରେଣ୍ଟି କରାଯାଏ । ସମରବାଦର ଅର୍ଥ ହେଲା ସମଗ୍ର ବିଶ୍ୱରେ ଶ୍ରମିକମାନଙ୍କ ନିକଟରୁ ହଜାର ହଜାର କୋଟି ଡଲାର କାଢ଼ି ନେବା ; ଏହା ହେଉଛି ସୃଷ୍ଟିକାରୀ ଶକ୍ତିମାନଙ୍କୁ ଧ୍ୱଂସକାରୀ ଶକ୍ତି ହେବା ପାଇଁ

ବାଧ କରିବା । ମାନବ ଜାତି ପାଇଁ ପୁଞ୍ଜିବାଦ ଯେ ଏକାନ୍ତ କ୍ଷତିକର ତାହାର ବୋଧହୁଏ ପ୍ରଧାନ ଓ ସର୍ବାଧିକ ସାଧାରଣ ପରିଚୟ ହେଉଛି ସମରବାଦ ।

କମ୍ୟୁନିଷ୍ଟମାନେ, ଯେଉଁମାନେ କି **ଇସ୍ତାହାର**ର ବିଚାରଧାରାକୁ ଉତ୍ତରାଧିକାର ସୂତ୍ରରେ ପାଇଛନ୍ତି, ସେମାନେ ସମସ୍ତେ ଆଧୁନିକ ପୁଞ୍ଜିବାଦୀ ସମାଜର ସଙ୍କଟକୁ ବିଶେଷଭାବେ ବିଶ୍ଳେଷଣ କରିଛନ୍ତି । ସେ ସଙ୍କଟ ଯେତେ ନିର୍ଦ୍ଦିଷ୍ଟ ହେଲେ ସୁଦ୍ଧା, ସମାଜର ଉତ୍ପାଦିକା ଶକ୍ତିମାନଙ୍କ ନିମନ୍ତେ ପୁଞ୍ଜିବାଦୀ ବ୍ୟବସ୍ଥାର କ୍ଷତିକାରିତାକୁ ତାହା ପ୍ରମାଣ କରୁଛି (ଗତକାଲି ତୁଳନାରେ ଆଜି ଆହୁରି ଅଧିକ ସୁସ୍ପଷ୍ଟ ଆକାରରେ) । ଅତଏବ, ମାର୍କସ ଓ ଏଙ୍ଗେଲସଙ୍କ ସମୟରେ ଯେପରି ହୋଇଥିଲା ଠିକ୍ ସେଇପରି, ଆଜି ମଧ୍ୟ କମ୍ୟୁନିଷ୍ଟମାନେ ମୂଳ ନୀତିଗୁଡ଼ିକୁ ମାନି ଚଳୁଛନ୍ତି : "ଯେହେତୁ ସଭ୍ୟତାର ସୁଫଳଗୁଡ଼ିକରୁ, ହାସଲ ହୋଇଥିବା ଉତ୍ପାଦିକା ଶକ୍ତିମାନଙ୍କର ସୁଫଳରୁ ବଞ୍ଚିତ ନହେବା ହିଁ ହେଉଛି ପ୍ରଧାନ କାମ, ତେଣୁ କରି ଯେଉଁ ପାରମ୍ପରିକ ପ୍ରକ୍ରିୟାରେ ତାହା ଉତ୍ପନ୍ନ ହୋଇଛି ତାକୁ ହିଁ ଧ୍ୱଂସ କରିଦେବାକୁ ପଡ଼ିବ ।"(୧)

(୧) କାର୍ଲ ମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ—
**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୬, ପୃ: ୧୭୫ ।

# ଶ୍ରମିକ ଶ୍ରେଣୀର ଐତିହାସିକ ବ୍ରତ

"ଏହି ସର୍ବଜନୀନ ମୁକ୍ତିର କାର୍ଯ୍ୟକୁ ସମ୍ପନ୍ନ କରିବା ହିଁ ଆଧୁନିକ ସର୍ବହରାର ଐତିହାସିକ ବ୍ରତ ।"

—ଫ୍ରେଡରିକ ଏଙ୍ଗେଲସ

ଶ୍ରମିକ ଶ୍ରେଣୀର ଭୂମିକା ସମ୍ପର୍କରେ ମାର୍କସବାଦୀ ତତ୍ତ୍ୱ ସାଙ୍ଗଠନିକଭାବେ ଆସିଛି ଇତିହାସର ବସ୍ତୁବାଦୀ ଅବବୋଧରୁ, ଆଉ ବିଶେଷ ରୂପେ—ଉତ୍ପାଦନର ପୁଞ୍ଜିବାଦୀ ପ୍ରଣାଳୀର ନିର୍ଯାସ ଭିତରୁ ।

ସର୍ବହରା ସମସ୍ତ ସାମାଜିକ ସମ୍ପତ୍ତି ସୃଷ୍ଟି କରୁଛି, ସାମାଜିକ ଉତ୍ପାଦନ ଦ୍ୱାରା ପ୍ରଶିକ୍ଷିତ ଓ ଏକତାବଦ୍ଧ ହେଉଛି, ଆଉ ତାହା ସାଙ୍ଗେ ସାଙ୍ଗେ ସର୍ବହରା ହୋଇଛି ସର୍ବାଧିକ ନିର୍ଯାତିତ, ଶୋଷିତ ଓ ସାମାଜିକଭାବେ ଅସହାୟ ଶ୍ରେଣୀ ; ସେ ଯେଉଁ ସମ୍ପଦ ନିଜେ ସୃଷ୍ଟି କରୁଛି ତାହାକୁ ବ୍ୟବହାର କରିବାର ସୁଯୋଗ ତା'ର ନାହିଁ । **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର**ରେ ଜୋର ଦେଇ କୁହାଯାଇଛି ଯେ ଏ ସମସ୍ତ ଗୁଣ ସର୍ବହରା ଭିତରେ ଏକତ୍ର ରହିଥିବାର କାରଣରୁ ତାହା ହୋଇଛି ତା'ର ବୈପ୍ଲବିକ ବ୍ରତ, ଅତ୍ୟାବଶ୍ୟକ ପ୍ରାଥମିକ ପ୍ରୟୋଜନୀୟତା । ସର୍ବହରା ଏକ ନିର୍ଯାତିତ ଶ୍ରେଣୀ ହୋଇଥିବା ହେତୁ ବୁର୍ଜୁଆମାନଙ୍କ ଉପରେ ତା'ର ଆକ୍ରମଣ ଆବଶ୍ୟକ ପଡୁଛି । ତେଣେ "ସଭ୍ୟତାର ସୁଫଳଗୁଡ଼ିକୁ" ରକ୍ଷା କରିବା ଓ ବୃଦ୍ଧି କରିବା ନିମନ୍ତେ ତା'ର ରହିଥିବା ଶକ୍ତି ଓ ସାମର୍ଥ୍ୟ ହୋଇଛି ଐତିହାସିକଭାବରେ ପ୍ରଗତିଶୀଳ । ଏହିପରି ଭାବରେ ପୁଞ୍ଜିର ଆତ୍ମ-ଖଣ୍ଡନ, ଶ୍ରମିକ ଶ୍ରେଣୀ ଦ୍ୱାରା ପୁଞ୍ଜିବାଦୀ ଉତ୍ପାଦନ ସମ୍ପର୍କର ଖଣ୍ଡନଭାବେ ଅନୁଭୂତ ହୁଏ । ଏ ଶ୍ରମିକ ଶ୍ରେଣୀ ହେଉଛି ବୁର୍ଜୁଆ ସମାଜର ଅଙ୍ଗ ବିଶେଷ । "ମାତ୍ର ଯାହା ବୁର୍ଜୁଆର ମୃତ୍ୟୁକୁ ବରଣ କରିଆଣେ ସେ ଅସ୍ତ୍ରକୁ ବୁର୍ଜୁଆମାନେ କେବଳ ଯେ

ତଆର କରିଛନ୍ତି ତାହା ନୁହେଁ"; **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର** କହେ, "ଉକ୍ତ ହତିଆରକୁ ଯେଉଁ ମଣିଷମାନେ ବ୍ୟବହାର କରିବେ—ଆଧୁନିକ ଶ୍ରମିକ ଶ୍ରେଣୀ—ସର୍ବହରା ଶ୍ରେଣୀ—ସେମାନଙ୍କୁ ମଧ୍ୟ ଏହା ସୃଷ୍ଟି କରିଛି ।" (୧)

ମାତ୍ର ପୁରୁଣାକାଳିଆ ସାମାଜିକ ରୂପର କବର-ଖୋଳାଳୀ କେବଳ ହେବା ହିଁ ଶ୍ରମିକ ଶ୍ରେଣୀର ଐତିହାସିକ ଭୂମିକା ନୁହେଁ (ଏହା ଭୁଲି ଯିବା ଉଚିତ ନୁହେଁ ଯେ ଏକ ସମୟରେ ବୁର୍ଜୁଆମାନେ ସାମନ୍ତବାଦକୁ ନିପାତ କରିଥିଲେ) । ଏ ଭୂମିକାର ଅର୍ଥ ପ୍ରଥମତଃ ଏଇ ଯେ ସର୍ବହରା ବିପ୍ଳବ, ଗୋଟିଏ ସାମାଜିକ ରୂପକୁ ହଟାଇ ଅନ୍ୟ ଏକ ସାମାଜିକ ରୂପକୁ ସେଠାରେ ସ୍ଥଳାଭିଷିକ୍ତ କରାଏ ସେତିକି ନୁହେଁ, **ବିଶ୍ୱ ଇତିହାସରେ ଏକ ନୂତନ ଯୁଗକୁ** ଏହା ଆମନ୍ତ୍ରଣ କରି ଆଣେ ; ଏହା ମାନବ-ଜାତିକୁ ତା'ର "ଇତିହାସ ପୂର୍ବ" ଅବସ୍ଥାରୁ "ଇତିହାସ"ର ଅବସ୍ଥାକୁ, ଏବଂ ମାର୍କସ-ବାଦର ପ୍ରତିଷ୍ଠାତାମାନେ ସାଂକେତିକ ଅର୍ଥରେ କହିଲି ଭଳି "ପ୍ରୟୋଜନୀୟତାର ସାମ୍ରାଜ୍ୟରୁ ମୁକ୍ତିର ସାମ୍ରାଜ୍ୟକୁ" ନେଇ ଯାଏ ।

ସ୍ୱଭାବତଃ ମାର୍କସବାଦର ଭାବାଦର୍ଶଗତ ବିରୋଧୀମାନେ ଶ୍ରମିକ ଶ୍ରେଣୀର ଭୂମିକା ସମ୍ପର୍କିତ ଏଇ ଧାରଣା ବିରୋଧରେ ଜୋର ଅଗ୍ନିବାଣ ବୃଷ୍ଟି କରନ୍ତି । "ସର୍ବଶେଷ ତଥ୍ୟ" ବିଷୟ ଉଦ୍ଧାର କରି ସେମାନେ ଏହା ପ୍ରମାଣ କରିବାକୁ ଚେଷ୍ଟା କରନ୍ତି ଯେ ଶ୍ରମିକ ଶ୍ରେଣୀର ବୈପ୍ଳବିକ ଶକ୍ତି କ୍ରମଶଃ କମି କମି ଯାଉଛି ; ସେମାନଙ୍କର ଯୁକ୍ତି ହେଲା ଯେ ଶ୍ରମିକ ଶ୍ରେଣୀର ଭୌତିକ ସ୍ଥିତିରେ ଉନ୍ନତି ସାଧିତ ହୋଇଛି, ଯେତେବେଳେ କି ଆଧୁନିକ ଉତ୍ପାଦନରେ ତାହାର ସଂଖ୍ୟାଗତ କ୍ଷମତା ଓ ଗୁରୁତ୍ୱ କମି ଯାଇଛି ।

ମାର୍କ ଟ୍ୱାଇନଙ୍କ ମୃତ୍ୟୁ ସମ୍ବାଦ ଛାପିଥିବା ଏକ ସମ୍ବାଦପତ୍ରକୁ ସେ ଏକଦା ଲେଖିଥିଲେ : "ମୋ ମୃତ୍ୟୁ ସଂକ୍ରାନ୍ତ ସମ୍ବାଦ ଏକ ଅତିରଞ୍ଜନ !" ଐତିହାସିକ କାର୍ଯ୍ୟ ସମ୍ପାଦନ କରିବାରେ ଶ୍ରମିକ ଶ୍ରେଣୀର ଯୋଗ୍ୟତା ମୃତ୍ୟୁ ଲାଭ କରିଛି ବୋଲି ଯେଉଁମାନେ ଭାବୁଛନ୍ତି ସେମାନଙ୍କୁ ଠିକ ଏଇ ଭଳି ବ୍ୟଙ୍ଗାତ୍ମକ ଉତ୍ତର ଶ୍ରମିକଶ୍ରେଣୀ ଦେଇ ପାରେ ।

ପ୍ରଥମତଃ, ଏହା ଏକ "ଅତିରଞ୍ଜନ" ଯେ ଶ୍ରମିକଶ୍ରେଣୀର ଭୌତିକ ସ୍ଥିତି ବହୁତ ବଢ଼ିଯାଇଛି । ଅଧିକାଂଶ ଶ୍ରମଜୀବୀ ଜନତାର ପ୍ରକୃତ ମଜୁରି ଯେ ବୃଦ୍ଧି ପାଇଛି

---

(୧) କାର୍ଲ ମାର୍କସ ଓ ଫ୍ରେଡ଼ରିକ ଏଙ୍ଗେଲସ—
**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୬, ପୃ: ୪୯୦ ।

ଏଥିରେ ସନ୍ଦେହ ନାହିଁ । ହେଲେ, କମ୍ୟୁନିଷ୍ଟ ପାର୍ଟିମାନେ ନିଜ ନିଜ ଦଲିଲପତ୍ରରେ ଦୃଢ଼ଭାବେ କହୁଛନ୍ତି ଯେ ଶ୍ରମିକଶ୍ରେଣୀ ଉପରେ ଆଧୁନିକ ଉତ୍ପାଦନର ଆଘାତ କାରଣରୁ ଯେଉଁ ସମସ୍ୟାମାନ ଜାତ ହୋଇଛି ତାହାକୁ ଭୁଲିଗଲେ ଚଳିବ ନାହିଁ । ସେ ସମସ୍ୟାଗୁଡ଼ିକ ହେଲା ସ୍ନାୟୁଗତ ଚାପ, ଶରୀର ଉପରେ ବୃତ୍ତିଗତ ଆଘାତ, ଶ୍ରମର ସଘନୀକରଣ, ଭିନ୍ନ ଭିନ୍ନ ଜାତିର ଲୋକଙ୍କ ମଜୁରିରେ ପାର୍ଥକ୍ୟ, ମୁଦ୍ରା ସଙ୍କଟ, ମୂଲ୍ୟ ବୃଦ୍ଧି ଇତ୍ୟାଦି । ଏହା ମଧ୍ୟ ଭୁଲିଗଲେ ଚଳିବ ନାହିଁ ଯେ ଉନ୍ନତ ପୁଞ୍ଜିବାଦୀ ଦେଶଗୁଡ଼ିକର ଲୋକଙ୍କ ଭିତରେ ଦେଖାଯାଉଥିବା ଅପେକ୍ଷାକୃତ ଅଧିକ ଭୌତିକ ସ୍ୱଚ୍ଛଳତାର ଦୁର୍ବଳ ଦିଗକୁ ଆଖି ପକାଇଲେ ଦେଖିବାକୁ ମିଳେ ଲୁଣ୍ଠିତ ତୃତୀୟ ବିଶ୍ୱର ଦେଶଗୁଡ଼ିକରେ ଲୋକଙ୍କ ଦାରିଦ୍ର୍ୟ, ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତା, ସହସ୍ରାବ୍ଦୀର ପୁଲିସର ଭୂମିକା ଗ୍ରହଣ ଦିଗରେ ସାମ୍ରାଜ୍ୟବାଦୀ କ୍ରିୟାକଳାପ, ପୃଥିବୀର ଅନେକ ଅଞ୍ଚଳରେ ସନ୍ତ୍ରାସବାଦୀ କ୍ରିୟାକର୍ମରେ ଲିପ୍ତ ରହିବା, ଇତ୍ୟାଦି । ବିଶେଷଭାବେ, ଏହା ଭୁଲିଯିବା ଆଦୌ ଉଚିତ ହେବ ନାହିଁ ଯେ ଶ୍ରମିକଶ୍ରେଣୀର ଅବସ୍ଥାରେ ଉନ୍ନତିର ଏକ ବିରାଟ ଅଂଶର ମୂଳରେ ରହିଛି ସର୍ବହରାର ଅବିଚଳ ଓ ଧାରାବାହିକ ଶ୍ରେଣୀ ସଂଗ୍ରାମ ।

ହେଲେ, ଏହାଠାରୁ ଆହୁରି ଅନେକ କଥା ବାକି ରହିଛି । ସଂପୃକ୍ତ ପ୍ରଣାଳୀର ଅନ୍ତର୍ବିରୋଧକୁ ଦ୍ୱନ୍ଦ୍ୱବାଦୀ ମାର୍କସ କେବେ ତାହାର ଗୋଟିଏମାତ୍ର (ଯେମିତିକି ଶ୍ରମିକଶ୍ରେଣୀର ଭୌତିକ ସ୍ଥିତି) ବିଷୟର ଗତିଶୀଳତା ଦୃଷ୍ଟିରୁ ବିଚାର କରି ନଥିଲେ । ପୁଞ୍ଜିବାଦୀ-ସର୍ବହରାର ପାରସ୍ପରିକ ସମ୍ପର୍କକୁ ସେ ବିଶ୍ଳେଷଣ କରିଥିଲେ, ଯେହେତୁ ସାମାଜିକ ବିଶ୍ୱର ଉତ୍ତେଜନା ଓ ବିରୋଧମାନ ଏଇ ଦୁଇ ମେରୁର ପାରସ୍ପରିକ ସମ୍ପର୍କ ଦ୍ୱାରା ସ୍ଥିରୀକୃତ ହୁଏ । ଆଉ ତାହା ଫଳରେ ଏହା ସଫା ଜଣାପଡ଼ି ଯାଏ ଯେ ପୁଞ୍ଜିର ଦ୍ରୁତ ବିକାଶ ହେଲେ ତାହା ଶ୍ରମିକର ମଜୁରି ବୃଦ୍ଧିରେ କେବଳ ସହାୟକ ହୁଏ ନାହିଁ, ପରନ୍ତୁ ଏହା ଶ୍ରମିକ ଓ ପୁଞ୍ଜିପତି ମଧ୍ୟରେ ରହିଥିବା ସାମାଜିକ ବ୍ୟବଧାନକୁ ମଧ୍ୟ ବଢ଼ାଏ, ଆଉ ତାହା ସାଙ୍ଗକୁ ଶ୍ରମ ଉପରେ ପୁଞ୍ଜିର ପ୍ରଭାବ ଓ ପୁଞ୍ଜି ଉପରେ ଶ୍ରମର ନିର୍ଭରଶୀଳତାକୁ ବୃଦ୍ଧି କରେ । ଏହାର ଅର୍ଥ ହେଲା ଶ୍ରମିକର ସାମାଜିକ ସ୍ଥିତି ନିମ୍ନଗାମୀ ହୁଏ ଓ ତା'ର ସାମାଜିକ ମର୍ଯ୍ୟାଦା ମଧ୍ୟ କ୍ଷୟପ୍ରାପ୍ତ ହୁଏ । କମ୍ୟୁନିଷ୍ଟ ତତ୍ତ୍ୱବିଦ୍‌ମାନଙ୍କର ଗବେଷଣାରୁ ଜଣାଯାଇଛି ଯେ ସାମାଜିକ ଉତ୍ତେଜନାରେ ଏଭଳି ବୃଦ୍ଧି ବହୁ ପୁଞ୍ଜିବାଦୀ ଦେଶରେ ଘଟୁଛି ; ମନୋପୋଲି ବୁର୍ଜୁଆ, ଯାହା ଅଭୂତପୂର୍ବ ଗତିରେ ଧନଶାଳୀ ହେଉଛି ତାହା ସହିତ, ଶ୍ରମିକଶ୍ରେଣୀ, ଯା'ର ଭୌତିକ ସ୍ଥିତି ବୃଦ୍ଧିପ୍ରାପ୍ତ ହେଉଛି, ତା'ର ସାମାଜିକ ଓ

ଅର୍ଥନୈତିକ ବ୍ୟବଧାନ ବୃଦ୍ଧି ପାଉଛି । ଅଧିକନ୍ତୁ ଶ୍ରମଜୀବୀ ଜନସାଧାରଣଙ୍କର ପ୍ରୟୋଜନୀୟତା ତାହାକୁ ପୂର୍ଣ୍ଣ କରିବାର ସମ୍ଭାବନାଠାରୁ ଅଧିକ ବଢ଼ିଯାଇଛି ।

ବିଗତ ଶହେ ବର୍ଷ ଭିତରେ ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କରେ ଶ୍ରମିକଶ୍ରେଣୀର ଅବସ୍ଥାରେ ମୌଳିକ ପରିବର୍ତ୍ତନ କିଛି ହେଲେ ହୋଇ ନାହିଁ । ସେଇ ପ୍ରଣାଳୀକୁ ପୁଞ୍ଜିବାଦ ପୁନର୍ଗଠନ କରି ଚାଲିଛି ଯହିଁରେ ଶ୍ରମିକଶ୍ରେଣୀର ବୈପ୍ଳବିକ ସଙ୍ଗବଦ୍ଧତା ପରିପକ୍ୱ ହୁଏ ।

ବୁର୍ଜୁଆ ତାତ୍ତ୍ୱିକମାନଙ୍କର ଆଉ ଏକ ଯୁକ୍ତି ମଧ୍ୟ ରହିଛି ଯାହା ଏହାଭଳି ସମାନ "ମୂଲ୍ୟବାନ" । ମାର୍କସବାଦର ସମାଲୋଚକମାନେ ଏ ସିଦ୍ଧାନ୍ତରେ ପହଞ୍ଚନ୍ତି ଯେ ଯେହେତୁ ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କରେ ଶାରୀରିକ ଶ୍ରମ କରୁଥିବା ଶ୍ରମିକମାନଙ୍କ ସଂଖ୍ୟା କମିଯାଉଛି ତେଣୁ କରି ଶ୍ରମିକଶ୍ରେଣୀ ସଂଖ୍ୟାରେ ଊଣା ହୋଇଯାଉଛି, ଏବଂ ଐତିହାସିକ ନେତାଭାବରେ ତାହାର ସ୍ଥାନ ଗ୍ରହଣ କରୁଛନ୍ତି ମାନସିକ ଶ୍ରମରେ ନିଯୁକ୍ତ ଶ୍ରମିକମାନେ ଯେଉଁମାନେ ସଂଖ୍ୟାରେ ବଢ଼ୁଛନ୍ତି । ମାନସିକ ଶ୍ରମରେ ନିଯୁକ୍ତ ଥିବା ଏ ଲୋକମାନେ ହେଉଛନ୍ତି ବୁଦ୍ଧିଜୀବୀ । ଅତଏବ ଏମାନେ ଦାବୀ କରନ୍ତି ଯେ **ଇସ୍ତାହାର**ର ଲେଖକମାନେ ଶ୍ରମିକଶ୍ରେଣୀ ଉପରେ ଅତ୍ୟଧିକ ଆସ୍ଥା ସ୍ଥାପନ କରିଥିବା ହେତୁ ଅପଟୁ ଭବିଷ୍ୟବକ୍ତା ଅଟନ୍ତି ।

ଏ ଯୁକ୍ତି ସଠିକ ହୋଇଥାନ୍ତା ଯଦି ମାର୍କସ ଓ ଏଙ୍ଗେଲସ କେବଳ ଶାରୀରିକ ଶ୍ରମ କରୁଥିବା ଲୋକଙ୍କୁ "ସର୍ବହରା" ମଣିଥାନ୍ତେ, ହେଲେ ଏପରି କରିବା ସେମାନଙ୍କ ପକ୍ଷରେ ଅଯୌକ୍ତିକ ହୋଇଥାନ୍ତା । ସେମାନଙ୍କ ଧାରଣା ଅନୁସାରେ ସର୍ବହରା ହେଉଛି ଭଡ଼ା ସୂତ୍ରରେ ନିଯୁକ୍ତ ହୋଇଥିବା ଶ୍ରମିକମାନଙ୍କର ଏକ ଶ୍ରେଣୀ ଯାହାଙ୍କର ହାତରେ ନିଜସ୍ୱ ଉତ୍ପାଦନ ସାଧନ ନଥିବ, ପୁଞ୍ଜିବାଦୀ ଉତ୍ପାଦନ ଦ୍ୱାରା ଯେଉଁମାନେ ଶୋଷିତ ହେଉଥିବେ, ଏବଂ ସମ୍ପୂର୍ଣ୍ଣଭାବରେ ନିଜର ଶ୍ରମ ବିକ୍ରୟ କରିବା ଜରିଆରେ ସେମାନେ ନିଜର ଜୀବିକା ଅର୍ଜନ କରୁଥିବେ । ମାନସିକ ଶ୍ରମିକମାନଙ୍କର କେତେକ ଗୋଷ୍ଠୀକୁ "ସର୍ବହରା" ଶ୍ରେଣୀଭୁକ୍ତ କରିବାର ସମ୍ଭାବନାକୁ ଏ ଧାରଣା ବାଦ୍ ଦେଇ ନପାରେ (ଏହା ହେଉଛି ଏକ ମାତ୍ର ସଠିକ୍ ଧାରଣା) । ସେଥି ନିମନ୍ତେ ଆଜିର ମାନସିକ ଶ୍ରମିକମାନଙ୍କର ସାମାଜିକ ସ୍ଥିତି କ'ଣ, ଉତ୍ପାଦନରେ ସେମାନଙ୍କର ସ୍ଥାନ କେଉଁଠି ଏବଂ ସେମାନଙ୍କ କାମଦାମର ଚରିତ୍ର କ'ଣ ତାହା ଜାଣିବା ଦରକାର, ଆଉ ଏହା ଜାଣିବା ପାଇଁ ଯେ ସେମାନଙ୍କ କ୍ରିୟାକଳାପର ଏ ସମସ୍ତ ଲକ୍ଷଣ ସହିତ

ଶ୍ରମିକଶ୍ରେଣୀର ଧାରାବାହିକ ଲକ୍ଷଣର ସାମଞ୍ଜସ୍ୟ ରହୁଛି କି ନାହିଁ ତାହା ସ୍ଥିର କରିବା ନିମନ୍ତେ, ଗଭୀର ଗବେଷଣା ଆବଶ୍ୟକ ।

ଏହା କହିବା ନିଷ୍ପ୍ରୟୋଜନ ଯେ ମାର୍କସ ଓ ଏଙ୍ଗେଲସ ଏ ପ୍ରଶ୍ନର କୌଣସି ନିର୍ଦ୍ଦିଷ୍ଟ ଉତ୍ତର ଦେଇ ନଥିଲେ—ଏ ପ୍ରଶ୍ନକୁ ବିଂଶ ଶତାବ୍ଦୀ ହିଁ ଉଠାଇଛି—ମାତ୍ର ଏକ ସଫଳକାମ ବୈଜ୍ଞାନିକ ବିଶ୍ଳେଷଣ ନିମନ୍ତେ ଗୃହକାଠିର ସଙ୍କେତ ସେମାନେ ଦେଇ ଯାଇଛନ୍ତି । ଆଧୁନିକ ମାନସିକ ଶ୍ରମିକର ସ୍ଥିତି ସମ୍ପର୍କରେ କମ୍ୟୁନିଷ୍ଟମାନେ ଯେଉଁ ନିର୍ଦ୍ଦିଷ୍ଟ ଅନୁଶୀଳନ ଚଳାଇଛନ୍ତି ସେଥିରୁ ଜଣାଯାଏ ଯେ ଶ୍ରମିକ ଶ୍ରେଣୀର ନିକଟତର ହେବା ନିମନ୍ତେ, ଏବଂ ଏକ ସ୍ୱତନ୍ତ୍ର ଅଂଶଭାବରେ ସେ ଶ୍ରେଣୀରେ ଯୋଗ ଦେବା ନିମନ୍ତେ ସେମାନଙ୍କର କ୍ରମେ ବଢୁଥିବା ପ୍ରବୃତ୍ତି ରହିଛି । ଉଦାହରଣ ସ୍ୱରୂପ, ୧୯୭୧ ମସିହାରେ ମସ୍କୋଠାରେ କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟିମାନଙ୍କର ଯେଉଁ ଆନ୍ତର୍ଜାତିକ ବୈଠକ ହୋଇଥିଲା ସେଠାରେ ଉଲ୍ଲେଖ କରାଗଲା : "ଏ ଯୁଗରେ ଯେତେବେଳେ କି ବିଜ୍ଞାନ ହୋଇଛି ଏକ ପ୍ରତ୍ୟକ୍ଷ ଉତ୍ପାଦିକା ଶକ୍ତି ସେତେବେଳେ ବୁଦ୍ଧିଜୀବୀମାନଙ୍କର କ୍ରମ ବର୍ଦ୍ଧନଶୀଳ ସଂଖ୍ୟା ମଜୁରି ଓ ବେତନଭୋଗୀ ଶ୍ରମିକଙ୍କ ସହିତ ସାମିଲ ହେଉଛନ୍ତି ।" ୧୯୮୧ ମସିହା ମଇ ମାସରେ ଅନୁଷ୍ଠିତ ଫିନଲାଣ୍ଡ କମ୍ୟୁନିଷ୍ଟ ପାର୍ଟିର ୧୯ତମ କଂଗ୍ରେସରେ ଦର୍ଶାଯାଇଥିଲା ଯେ ଆଜିର ଅଧିକାଂଶ ମାନସିକ ଶ୍ରମିକ ହେଉଛନ୍ତି ଏଭଳି ଲୋକ ଯେଉଁମାନେ କି କମ ମଜୁରି ଉପାର୍ଜନ କରନ୍ତି ଏବଂ କୌଣସି ପ୍ରକାର ସ୍ୱତନ୍ତ୍ର କାର୍ଯ୍ୟ କରନ୍ତି ନାହିଁ । ଦାୟିତ୍ୱସମ୍ପନ୍ନ କାର୍ଯ୍ୟ କରୁଥିବା ବୁଦ୍ଧିଜୀବୀମାନଙ୍କର ସଂଖ୍ୟା ତୁଳନାତ୍ମକ ଭାବେ କମି କମି ଯାଉଛି । ସେମାନଙ୍କ ମଧ୍ୟରୁ ଅଧିକାଂଶ କାରଖାନା ଶ୍ରମିକଙ୍କ ସହିତ ସମାନ ଅବସ୍ଥାରେ ରହିଛନ୍ତି, ଏବଂ ସେମାନଙ୍କ ଉପାୟ ପ୍ରୟୋଗ ପୂର୍ବକ ଆପଣା ସ୍ୱାର୍ଥ ରକ୍ଷା ସକାଶେ କାର୍ଯ୍ୟ କରୁଛନ୍ତି । ଅତଏବ ଶ୍ରମିକଶ୍ରେଣୀର ସଂଖ୍ୟା ହ୍ରାସ ହେଉ ନାହିଁ ବରଂ ବୃଦ୍ଧିପ୍ରାପ୍ତ ହେଉଛି, ଆହୁରି ଅଧିକ ସଂଖ୍ୟକ ବେତନଭୋଗୀ ଶ୍ରମିକଙ୍କୁ ନିଜ ପରିସର ଭିତରକୁ ଆଣୁଛି ।

ବାସ୍ତବ ଘଟଣା କ'ଣ ହେବ ତାହାକୁ ଆଗରୁ ଅନୁମାନ ନକରିବା, ଆଉ ଯାହା ମାତ୍ର ପ୍ରବୃତ୍ତି ହୋଇ ରହିଛି ତାହାକୁ ପୂର୍ଣ୍ଣାଙ୍ଗ ବିସ୍ତୃତ କରିବା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏହା ଏକ ଉଲ୍ଲେଖନୀୟ ପ୍ରବୃତ୍ତି ହୋଇଥିଲେ ସୁଦ୍ଧା ସମ୍ପୂର୍ଣ୍ଣ ନୁହେଁ । ବୁଦ୍ଧିଜୀବୀମାନଙ୍କର ଶ୍ରେଣୀଗଠନ ଆରମ୍ଭ ମାତ୍ର ହୋଇଛି । ସେମାନଙ୍କ ମଧ୍ୟରୁ କେତେକ ଶୋଷିତ ଓ ବେତନଭୋଗୀ ଶ୍ରମିକ ହୋଇଛନ୍ତି, ଏବଂ ଏକ ଏକ ମେରୁରେ ସମାବେଶ ହେବାର

ଆଜିର ବିପର୍ଯ୍ୟୟାଭିମୁଖୀ ସାମାଜିକ ବିଭାଜନ ବୃଦ୍ଧି ପାଉଛି । ତେଣୁ, ଶ୍ରମିକଶ୍ରେଣୀର ଏବଂ ଉତ୍ପାଦକସ୍ଥ ଶୋଷିତ ଶ୍ରମିକମାନଙ୍କ ବାହିନୀର ସଂଖ୍ୟାଗତ ଶକ୍ତି କମୁନାହିଁ, ପରନ୍ତୁ ବୃଦ୍ଧି ପ୍ରାପ୍ତ ହେଉଛି । ତାହା ସାଙ୍ଗେ ସାଙ୍ଗେ ସେମାନଙ୍କର ଚେତନା, ଶିକ୍ଷାର ସ୍ତର, ପ୍ରୟୋଜନୀୟତା, ଓ ସାମାଜିକ କ୍ରିୟାକଳାପ ବୃଦ୍ଧି ପାଉଛି ।

ଅତଏବ ଏଥିରୁ ଦେଖାଯିବ ଯେ ଶ୍ରମିକ ଶ୍ରେଣୀ—ବୈପ୍ଲବିକ ସମାଜବାଦୀ ରୂପାନ୍ତରର ଯିଏ ହେଉଛି କର୍ତ୍ତା—ତାହା ବୈଜ୍ଞାନିକ ଓ ପ୍ରଯୁକ୍ତିଗତ ବିପ୍ଳବର ପ୍ରଚଣ୍ଡ ରୌଦ୍ରରେ "ତରଳି" ଯାଇନାହିଁ । ତେଣୁ **ଇସ୍ତାହାର**ରେ ଥିବା ବିଶ୍ଳେଷଣ କେବଳ ମାତ୍ର ଇତିହାସ ନୁହେଁ ।

# ଯୁଦ୍ଧର ନିରୋଧ ନିମନ୍ତେ ସଂଗ୍ରାମ ତଥା ସାମାଜିକ ଓ ଶ୍ରେଣୀ ସଂଗ୍ରାମ : ଅତୀତ ଓ ବର୍ତ୍ତମାନ

ବର୍ତ୍ତମାନର ପରମାଣୁ-କ୍ଷେପଣାସ୍ତ୍ର ଯୁଗର ନିର୍ଦ୍ଦିଷ୍ଟ ଘଟଣାପ୍ରବାହ ଦୃଷ୍ଟେ ମାର୍କସବାଦୀ ତତ୍ତ୍ୱର ଖଣ୍ଡନ ହେଉଛି କି ବୋଲି ଏକ ପ୍ରଶ୍ନ ଆଜି ଉଠିଛି । ଶାନ୍ତି ନିମନ୍ତେ ସଂଗ୍ରାମର କାର୍ଯ୍ୟ ସାମାଜିକ ଓ ଶ୍ରେଣୀ ସଂଗ୍ରାମର କାର୍ଯ୍ୟକୁ ଅକାମୀ କରି ଦେଉଛି କି, ଏବଂ **ଇସ୍ତାହାର**ରେ ଯେଉଁ ବୈପ୍ଲବିକ ତତ୍ତ୍ୱ ପ୍ରଦତ୍ତ ହୋଇଥିଲା ତାହା ଏବେ ପୁରୁଣାକାଳିଆ ହୋଇଯାଉଅଛି କି ? ଏହି ଭଳି ପ୍ରଶ୍ନମାନ ଉଠିଛି ।

ଏ ପ୍ରଶ୍ନ ପ୍ରତି ଆମର ଉତ୍ତର ହେଲା "ନାହିଁ," ଏହା ପୁରୁଣାକାଳିଆ ହୋଇ ଯାଉ ନାହିଁ । ବର୍ତ୍ତମାନ ଆବଶ୍ୟକ ହେଉଛି ଏହି ଯେ ପରମାଣୁ-କ୍ଷେପଣାସ୍ତ୍ର ଯୁଗ ସହିତ ସାମଞ୍ଜସ୍ୟ ରଖି ଏ ତତ୍ତ୍ୱକୁ ନିର୍ଦ୍ଦିଷ୍ଟ ରୂପ ଦେବା ଓ ବ୍ୟାଖ୍ୟା କରିବା । ସମସାମୟିକ କମ୍ୟୁନିଷ୍ଟ ଆନ୍ଦୋଳନ ଏହି କର୍ତ୍ତବ୍ୟ ପାଳନ ଦିଗରେ ଉଲ୍ଲେଖନୀୟ ଅବଦାନ ଦେଇଛି ।

ଅବଶ୍ୟ ମାର୍କସବାଦୀମାନେ ଓ କମ୍ୟୁନିଷ୍ଟମାନେ ସଦାସର୍ବଦା ଶାନ୍ତିର ଜୋରଦାର ସମର୍ଥକଭାବେ ହୋଇ ରହିଆସିଛନ୍ତି—ଆନ୍ଦୋଳନର ପ୍ରାକ୍‌କାଳରେ, **ଇସ୍ତାହାର** ଓ ପ୍ରଥମ ଆନ୍ତର୍ଜାତିକର ଦିନଗୁଡ଼ିକରେ, ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏବଂ ପ୍ରଥମ ବିଶ୍ୱ ଯୁଦ୍ଧ କାଳରେ । ଶାନ୍ତିର ସ୍ଲୋଗାନ ଥିଲା ରୁଷିଆରେ ୧୯୧୭ ଅକ୍ଟୋବର ବିପ୍ଳବର ଅନ୍ୟତମ ପ୍ରଧାନ ସ୍ଲୋଗାନ । ଯୁଦ୍ଧକୁ ପ୍ରତିହତ କରିବା ନିମନ୍ତେ ସଂଗ୍ରାମର କୌଶଳ, ୧୯୬୦ ଦଶକରେ ହୋଇଥିବା କମ୍ୟୁନିଷ୍ଟ ପାର୍ଟି ଓ ଓ୍ୱାର୍କର୍ସ ପାର୍ଟିମାନଙ୍କର ଆନ୍ତର୍ଜାତିକ ବୈଠକଗୁଡ଼ିକର ଦଲିଲପତ୍ରରେ ମୁଖ୍ୟ ସ୍ଥାନ ଗ୍ରହଣ କରିଥିଲା ।

ଅନ୍ୟ ପକ୍ଷରେ, ପୁଞ୍ଜି ଓ ସାମ୍ରାଜ୍ୟବାଦର ଆକ୍ରାମଣଖୋର ଓ ଦୁଃସାହସିକ ଚରିତ୍ର

କାରଣରୁ କମ୍ୟୁନିଷ୍ଟମାନଙ୍କୁ ସଦାସର୍ବଦା ଏକ ସୁସ୍ପଷ୍ଟ କୌଶଳ ସ୍ଥିର କରିବାକୁ ପଡ଼େ, ଯଦି ଯୁଦ୍ଧକୁ ପ୍ରତିହତ କରାଯାଇ ନପାରେ ଏବଂ ପ୍ରତିକ୍ରିୟାର ଶକ୍ତିମାନେ ଯଦି ବିଶ୍ୱବ୍ୟାପୀ ସଶସ୍ତ୍ର ସଂଗ୍ରାମ ଆରମ୍ଭ କରି ଦିଅନ୍ତି ସେ ଅବସ୍ଥାର ଉପଯୋଗୀ କାର୍ଯ୍ୟ ଓ ରାଜନୈତିକ ସ୍ଲୋଗାନ କ'ଣ ହେବ ତାହା ସେମାନଙ୍କୁ କଳନା କରିବାକୁ ହୋଇଥାଏ। ଏ ଆଭିମୁଖ୍ୟ ସମ୍ପୂର୍ଣ୍ଣ ନ୍ୟାୟସଙ୍ଗତ, କାରଣ ପରିସ୍ଥିତିରେ ସମ୍ଭାବ୍ୟ ପରିବର୍ତ୍ତନ ନିମନ୍ତେ ରାଜନୈତିକ ଓ ଭାବାଦର୍ଶଗତଭାବେ ପ୍ରସ୍ତୁତିବିହୀନ ହୋଇ ରହିବା ପାଇଁ ଜନସାଧାରଣଙ୍କୁ ଛାଡ଼ି ଦିଆଯାଇ ନପାରେ। "ସାମ୍ରାଜ୍ୟବାଦୀ ଯୁଦ୍ଧକୁ ଗୃହ ଯୁଦ୍ଧ କରି ଦିଅ!" ଏଇ ସ୍ଲୋଗାନ ଏବଂ ପ୍ରସ୍ତାବ ପ୍ରଥମ ବିଶ୍ୱ ଯୁଦ୍ଧର ଯୁଗରେ ବଲଶେଭିକ ପାର୍ଟି ଗ୍ରହଣ କରିଥିଲା। ୧୯୬୦ ଦଶକରେ କମ୍ୟୁନିଷ୍ଟମାନେ ସେମାନଙ୍କର ମୌଳିକ ଦଲିଲପତ୍ରରେ ଲେଖିଥିଲେ ଯେ ସାମ୍ରାଜ୍ୟବାଦୀ ଆକ୍ରମଣକାରୀମାନେ ଏକ ନୂତନ ବିଶ୍ୱଯୁଦ୍ଧ ଲଗି ଦେବା ଲାଗି ଯଦି ଦୁଃସାହସ କରନ୍ତି ତେବେ ଯେଉଁ ସମାଜ ବ୍ୟବସ୍ଥାରେ ସେମାନଙ୍କୁ ଭୟାବହ ଯୁଦ୍ଧ ଭିତରକୁ ଠେଲି ଦିଆଯାଉଛି ତାକୁ ସେମାନେ ଆଉ ବରଦାସ୍ତ କରିବେ ନାହିଁ: ସେମାନେ ସାମ୍ରାଜ୍ୟବାଦକୁ ଦଳିଚକଟି ଧ୍ୱଂସ କରି ଦେବେ।

ବର୍ତ୍ତମାନର ପରିସ୍ଥିତିରେ ଦୁଇ ପ୍ରକାରର ସମ୍ଭାବନା ନିମନ୍ତେ ଗୋଟିଏ ପ୍ରକାରର କୌଶଳ ନିର୍ଦ୍ଧାରଣ କରିବା ଭୁଲ ହେବ—ଗୋଟିଏ ହେଲା ଏଇ ଯେ ଯୁଦ୍ଧ ନିରୋଧ କରିଦିଆଯାଏ, ଏବଂ ଅନ୍ୟଟି ହେଲା ଯେ ଯୁଦ୍ଧ ଆରମ୍ଭ ହୋଇଯାଏ (ଯଦି କମ୍ୟୁନିଷ୍ଟ ଓ ଅନ୍ୟ ସକଳ ଶାନ୍ତିପ୍ରିୟ ଶକ୍ତିଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ଯୁଦ୍ଧ ଲାଗିଯାଏ)। ଗଣ ହତ୍ୟାର ହତିଆରମାନ ଆଜି ଏପରି ଭୟାବହ ବିଧ୍ୱଂସକାରୀ ଆକାର ଧାରଣ କରିଛନ୍ତି ଯେ ଯଦି ବିଶ୍ୱବ୍ୟାପୀ ସଶସ୍ତ୍ର ସଂଗ୍ରାମ ହୁଏ ତେବେ ସେଥିରେ ବିଜେତା ବା ବିଜିତ ବୋଲି କେହି ରହିବେ ନାହିଁ ଏବଂ ଏପରିକି ବିଶ୍ୱ ସଭ୍ୟତା ସମ୍ପୂର୍ଣ୍ଣ ବିଲୁପ୍ତ ହୋଇଯିବାର ପୂର୍ଣ୍ଣ ସମ୍ଭାବନା ରହିଛି। ଅତଏବ ଗୋଟିଏ ମାତ୍ର ସମ୍ଭାବନା ନିମନ୍ତେ କୌଶଳ ପ୍ରସ୍ତୁତ କରିବା ଏକାନ୍ତ ପ୍ରୟୋଜନ—ତାହା ହେଉଛି ଯୁଦ୍ଧର ନିରୋଧ କରିବା ଓ ମାନବ ଜାତିକୁ ପ୍ରଳୟ ମୁହଁରୁ ରକ୍ଷା କରିବା।

ଏହା ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟ ଯହିଁରେ ବର୍ତ୍ତମାନ ପରିସ୍ଥିତିର ନୂତନତ୍ୱ ପ୍ରତିଫଳିତ ହୋଇଛି। ଏକ ନୂତନ, ମୌଳିକ କର୍ତ୍ତବ୍ୟ ସମ୍ପାଦନର ପ୍ରୟୋଜନୀୟତା ଏଇଠାରୁ ଉଦ୍‌ଭବ ହେଉଛି। ଏ କର୍ତ୍ତବ୍ୟ ହେଲା ସେଇ ବିଶାଳକାୟ ଶାନ୍ତିକାମୀ ଶକ୍ତିମାନଙ୍କୁ (ପୂର୍ବର ଯେକୌଣସି ସମୟଠାରୁ ଅଧିକ ବିଶାଳ) ଐକ୍ୟବଦ୍ଧ କରିବାର

କର୍ତ୍ତବ୍ୟ ଯାହାର କ୍ଷମତା ଓ ପ୍ରଭାବ ଏକ ବିଶ୍ୱ ପାରମାଣବିକ ସଂଘର୍ଷକୁ ଏକାନ୍ତ ଅସମ୍ଭବ କରିଦେବ । ସୋଭିଏତ ୟୁନିଅନ କମ୍ୟୁନିଷ୍ଟ ପାର୍ଟି କାର୍ଯ୍ୟକ୍ରମର ନୂତନ ସଂସ୍କରଣ ଏହି କର୍ତ୍ତବ୍ୟକୁ ଆଧୁନିକ ବିଶ୍ୱରେ ପ୍ରଗତିର ଶକ୍ତି ଓ ପ୍ରତିକ୍ରିୟାର ଶକ୍ତିମାନଙ୍କ ମଧ୍ୟରେ ସଂଗ୍ରାମ ବୋଲି ବର୍ଣ୍ଣନା କରିଛି । ଏହା ସାଙ୍ଗେ ସାଙ୍ଗେ, ଶାନ୍ତିର ସୁରକ୍ଷା ଓ ଯୁଦ୍ଧ ବିପଦର ଦୂରୀକରଣ ନିମନ୍ତେ ଚାଲିଥିବା ମୂଳ ଆନ୍ଦୋଳନ ସମ୍ପର୍କରେ ଏଥିରେ କୁହାଯାଇଛି ଯେ ତାହା ହେଉଛି ସାମାଜିକ ବିକାଶର ପ୍ରଧାନ ଚାଳିକା ଶକ୍ତି ।

"ସାମାଜିକ ବିକାଶର ଶକ୍ତି" ବୋଲି ଏଠାରେ ଠିକ୍ କାହାକୁ ବୁଝାଇବ ? ଆଉ କେଉଁ ନୂତନ ବିଷୟ ଉପରେ ଏଠାରେ ଗୁରୁତ୍ୱ ଦିଆଯାଉଛି ?

ପ୍ରଥମ ଓ ପ୍ରଧାନ ହେଲା, ଏଇ ଶକ୍ତିମାନଙ୍କ ମଧ୍ୟରେ ରହିଛି **ବିଶ୍ୱ ସମାଜବାଦ,** ଯାହାକି ଯୁଦ୍ଧ ଓ ସମରବାଦ, ପ୍ରତିକ୍ରିୟା ଓ ହିଂସାର ଆଦର୍ଶ ଓ ନୀତି ବିରୋଧରେ ଅତୀତ ତୁଳନାରେ ସର୍ବାଧିକ ମଜଭୁତ ପ୍ରାଚୀର ଠିଆ କରାଇଛି ।

ଏ ଶକ୍ତିମାନଙ୍କର ଅନ୍ତର୍ଭୁକ୍ତ ମଧ୍ୟ ହୋଇଛନ୍ତି **ଶ୍ରମିକ ଶ୍ରେଣୀ ଓ କମ୍ୟୁନିଷ୍ଟ ଆନ୍ଦୋଳନ ।** ଏହାର ଅର୍ଥ ଯେଉଁ ଶ୍ରମିକମାନେ କେବଳ କମ୍ୟୁନିଷ୍ଟ ସେଇମାନେ ନୁହନ୍ତି, ସଂସ୍କାରପନ୍ଥୀଙ୍କ ସମେତ ସାମଗ୍ରିକଭାବେ ଶ୍ରମିକ ଶ୍ରେଣୀର ଆନ୍ଦୋଳନ ।

ତୃତୀୟ ଶକ୍ତି ହେଲା **ନବ ସ୍ୱାଧୀନ ଦେଶସମୂହ,** ଯେଉଁମାନେ ସେମାନଙ୍କର ସ୍ୱାଧୀନତାକୁ ମଜଭୁତ କରିବା ନିମନ୍ତେ ଓ ସାମାଜିକ ପ୍ରଗତି ନିମନ୍ତେ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ ଚାଲୁ ରଖିଛନ୍ତି । ଏ ଦେଶସମୂହର ସାମ୍ରାଜ୍ୟବାଦ-ବିରୋଧୀ ସାମର୍ଥ୍ୟ ଅତ୍ୟନ୍ତ ଅଧିକ ।

ଏଗୁଡ଼ିକ ବ୍ୟତୀତ ମଧ୍ୟ ଆଉ ଏକ ଶକ୍ତି ଅଛି—**ନୂତନ ଗଣତାନ୍ତ୍ରିକ ଆନ୍ଦୋଳନ,** ଯାହା ଭିତରେ ସବୁଠାରୁ ବଡ଼ ହେଲା ଯୁଦ୍ଧ-ବିରୋଧୀ ଓ ପରମାଣୁ ଅସ୍ତ୍ର-ବିରୋଧୀ ଆନ୍ଦୋଳନ । ଏହି ଆନ୍ଦୋଳନମାନ ସହିତରେ ସବୁ ମହାଦେଶର ନିୟୁତ ନିୟୁତ ଲୋକ ଯୋଗ ଦେଇଛନ୍ତି, ତାହା ସାଧାରଣ ଜନଜୀବନର ଏକ ସ୍ଥାୟୀ ଓ ପ୍ରଭାବଶାଳୀ ଉପାଦାନ ହୋଇଛି । ସେଗୁଡ଼ିକର ବୈଶିଷ୍ଟ୍ୟ ଏଇ ଯେ, ଭିନ୍ନ ଭିନ୍ନ ଶ୍ରେଣୀ ଓ ସାମାଜିକ ସ୍ତରର ଅନ୍ତର୍ଗତ ଲୋକମାନେ ଏଥିରେ ଅଂଶ ଗ୍ରହଣ କରୁଛନ୍ତି ଏବଂ ମାନବ ସଭ୍ୟତାର ସୁରକ୍ଷା ନିମିତ୍ତ ଏକ ସମାନ ଲକ୍ଷ୍ୟରେ ସେମାନେ ଏକତାବଦ୍ଧ ହୋଇଛନ୍ତି ।

ଶାନ୍ତି ପାଇଁ ସଂଗ୍ରାମ ଆଜି ଢେର ଅଧିକ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିବାକୁ

ଆରମ୍ଭ କରିଛି । ଆଧୁନିକ ଦୁନିଆର ଗଣତାନ୍ତ୍ରିକ, କମ୍ୟୁନିଷ୍ଟ ଓ ବୈପ୍ଳବିକ ଶକ୍ତିମାନେ ଏଥି ସହିତ ସକାଶେ ହେଉଥିବା ସାଧାରଣ ସଂଗ୍ରାମରେ ଅଧିକ ସ୍ୱତନ୍ତ୍ରତା ହାସଲ କରିଛନ୍ତି । ଏ ସଂଗ୍ରାମରେ କୌଶଳ ଅନେକ ନୂତନ ବୈଶିଷ୍ଟ୍ୟ ଲାଭ କରିଛି । ତାହା ସଙ୍ଗେ ସଙ୍ଗେ ଏହା ମଧ୍ୟ ଦୃଢ଼ତାର ସହିତ କୁହାଯିବା ଉଚିତ ଯେ ଆଧୁନିକ ପରିସ୍ଥିତିରେ ଶାନ୍ତି ନିମନ୍ତେ ସଂଗ୍ରାମର ଗୁରୁତ୍ୱ ବୃଦ୍ଧି ପାଉଥିବା ସତ୍ତ୍ୱେ ପୁଞ୍ଜିବାଦ ବିରୋଧରେ ବୈପ୍ଳବିକ ସଂଗ୍ରାମ ଚଳାଇବାର କାମ ତଥା ବିଶ୍ୱ ବୈପ୍ଳବିକ ପ୍ରକ୍ରିୟାକୁ ଆଗେଇ ନେବାର କାମ ଏବେ ମଧ୍ୟ ନିଶ୍ଚିତଭାବେ ଆମ କର୍ତ୍ତବ୍ୟର ଅନ୍ତର୍ଭୁକ୍ତ ରହିଛି । ଅନ୍ୟ କଥାରେ କହିଲେ, ନଗଦ ତଥା ଅତି ଜରୁରୀ ଉଦ୍ଦେଶ୍ୟ ପୂରଣ ନିମନ୍ତେ ସଂଗ୍ରାମର ଯେଉଁ ବିଶେଷ ଓ ନିର୍ଦ୍ଦିଷ୍ଟ ଉପାୟ ଆବଶ୍ୟକ ହୁଏ, ତାହା ଦୀର୍ଘକାଳୀନ ଲକ୍ଷ୍ୟଗୁଡ଼ିକୁ ବାତିଲ କରିଦିଏ ନାହିଁ । ଅଧିକନ୍ତୁ ଉକ୍ତ ଦୀର୍ଘକାଳୀନ ଲକ୍ଷ୍ୟରାଜି ଆଦୌ ନିରପେକ୍ଷ ନୁହନ୍ତି । ଆଜିର ନଗଦ ଲକ୍ଷ୍ୟ ପାଇଁ ଚାଲିଥିବା ସଂଗ୍ରାମର ବିଭିନ୍ନ ବିଭାବ ଉପରେ ସେଗୁଡ଼ିକର ବିଶେଷ ପ୍ରଭାବ ରହିଛି । ଏଥିରୁ ଦେଖାଯିବ ଯେ ଶାନ୍ତି ନିମନ୍ତେ ସଂଗ୍ରାମ ଗୋଟିଏ ଅମୂର୍ତ୍ତ ସ୍ୱୟଂକ୍ରିୟ ପ୍ରବୃତ୍ତି ହେବାକୁ ଆଦୌ ଯାଉ ନାହିଁ ଯାହାକି ଆଧୁନିକ ସମୟର ସାମାଜିକ ସଂଗ୍ରାମଗୁଡ଼ିକଠାରୁ ବିଚ୍ଛିନ୍ନ ହେବ—ପ୍ରକୃତ ପକ୍ଷେ ଏହା ସାମାଜିକ ପ୍ରଗତି ନିମନ୍ତେ ସଂଗ୍ରାମଠାରୁ ଅବିଚ୍ଛେଦ୍ୟ ।

ଏହାର ଅର୍ଥ ଠିକ୍ କଣ ? ଶାନ୍ତି ପାଇଁ ସଂଗ୍ରାମର ଅର୍ଥ—ତାହା ଯଦି ପ୍ରକୃତରେ କାମର କଥା ହୋଇଥାଏ, ଆଉ କେବଳ ମାତ୍ର ମହତ୍ ଉଦ୍ଦେଶ୍ୟ ବଖାଣିବା ହୋଇ ନ ଥାଏ—ଏହା ନୁହେଁ ଯେ ଶାନ୍ତି ପାଇଁ ଓ ମାନବବାଦୀ ଘୋଷଣା ଜାରି କରିବା ପାଇଁ କେବଳ ନିବେଦନ କରିବା । ଏହାର ତାତ୍ପର୍ଯ୍ୟ ହେଲା ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତା ତଥା ଆନ୍ତର୍ଜାତିକ ଉତ୍ତେଜନାକୁ ଜିଅଁୀ କରିବାରେ ଯେଉଁସବୁ ରାଜନୈତିକ ଓ ସାମାଜିକ ଶକ୍ତିମାନଙ୍କର ସ୍ୱାର୍ଥ ନିହିତ ଅଛି, ରାଜନୈତିକ ଉପାୟ ପ୍ରୟୋଗ କରି ସେମାନଙ୍କର ବିରୋଧ କରିବା । ସେଇଥି ନିମିତ୍ତ ଶାନ୍ତି ପାଇଁ ସଂଗ୍ରାମର ଅର୍ଥ ହେଲା ସାମ୍ରାଜ୍ୟବାଦର ଆକ୍ରମଣାତ୍ମକ ନୀତି ବିରୋଧରେ ସମାନ ଶକ୍ତିସମ୍ପନ୍ନ ବିରୋଧୀ କ୍ଷମତା ସୃଷ୍ଟି କରିବା, ଗଣତାନ୍ତ୍ରିକ ଶକ୍ତିମାନଙ୍କୁ ଓ ଶାନ୍ତିକାମୀ ଶକ୍ତିମାନଙ୍କୁ ଐକ୍ୟବଦ୍ଧ କରିବା । ଉଦ୍ଦେଶ୍ୟ ହେଲା ଆଧୁନିକ ବୁର୍ଜୁଆର ସର୍ବାଧିକ ପ୍ରତିକ୍ରିୟାଶୀଳ ଅଂଶ ଉପରେ—ସାମରିକ ଶିଳ୍ପ-ସମାହାର ଓ ପାରମାଣବିକ କ୍ଷେପଣାସ୍ତ୍ର ଉତ୍ପାଦକମାନଙ୍କ ମଧ୍ୟରେ ରହିଥିବା ସେଇ ଅଂଶ ଉପରେ—ଚାପ ସୃଷ୍ଟି କରିବା, ଯେପରିକି ସେମାନେ ହଠାତ୍ ଯୁଦ୍ଧ ଲଗେଇ ଦେବାର ଓ

ସ୍ୱୀତ ସଂସ୍କୃତିର ନୀତିକୁ ପରିହାର କରିବେ, ଏବଂ ଦୁଇ ପୃଥକ୍ ସମାଜ ବ୍ୟବସ୍ଥା ଅନ୍ତର୍ଗତ ରାଷ୍ଟ୍ରମାନଙ୍କ ମଧ୍ୟରେ ସ୍ୱାଭାବିକ, ସଭ୍ୟଜନୋଚିତ ସଂପର୍କର ରାସ୍ତା ସେମାନେ ଧରିବେ ।

ଶାନ୍ତି ପାଇଁ ସଂଗ୍ରାମ ସାଂଗଠନିକଭାବେ ସେଇସବୁ ଗୋଷ୍ଠୀକୁ ବିରୋଧ କରୁଥିବା ସଂଗ୍ରାମ ସହିତ ସଂଯୁକ୍ତ ଯେଉଁମାନଙ୍କର ଅସ୍ତ୍ରଶସ୍ତ୍ର ଉତ୍ପାଦନ ଏବଂ ସାମରିକ ଶିଳ୍ପ ସମାହାର ସହିତ ଯୋଗାଯୋଗ ରହିଛି । ୧୯୮୪ ଜାନୁଆରି ୬-୭ରେ ନ୍ୟୁରେମବର୍ଗଠାରେ ଅନୁଷ୍ଠିତ ଜର୍ମାନ ପାର୍ଟିର ୭ମ କଂଗ୍ରେସରେ ଉଲ୍ଲିଖିତ ହୋଇଥିଲା, "ଶାନ୍ତିର ତଥା କାମ କରିବା ଅଧିକାରର ସମର୍ଥକମାନଙ୍କର ସାଧାରଣ ଶତ୍ରୁ ଗୋଟିଏ ; ବୃହତ ପୁଞ୍ଜିର ଅପେକ୍ଷାକୃତ ଅଧିକ ପ୍ରତିକ୍ରିୟାଶୀଳ ଶକ୍ତିବର୍ଗ ତଥା ସେମାନଙ୍କର ରାଜନୈତିକ ଓକିଲବୃନ୍ଦ ।"

ଅବଶ୍ୟ ବୁର୍ଜୁଆଙ୍କର ସର୍ବାଧିକ ପ୍ରତିକ୍ରିୟାଶୀଳ ଅଂଶଗୁଡ଼ିକ ବିରୋଧରେ ସଂଗ୍ରାମର ନିଜସ୍ୱ ନିର୍ଦ୍ଦିଷ୍ଟ ଲକ୍ଷଣମାନ ରହିଛି ।

ସମାଜବାଦୀ ସଂପ୍ରଦାୟ ମଧ୍ୟରେ ଏ ଲକ୍ଷଣରାଜିରେ ରହିଛି **ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଅବସ୍ଥାରେ ଶାନ୍ତିପୂର୍ଣ୍ଣ ପ୍ରତିଯୋଗିତା ଓ ପ୍ରତିଦ୍ୱନ୍ଦ୍ୱିତା ।**

କମ୍ୟୁନିଷ୍ଟ ଓ ଶ୍ରମିକ-ଶ୍ରେଣୀର ଆନ୍ଦୋଳନ କ୍ଷେତ୍ରରେ ଏ ଲକ୍ଷଣମାନଙ୍କରେ ରହିଛି **ଶାନ୍ତି ନିମନ୍ତେ ସଂଗ୍ରାମରେ ଜଡ଼ିତ ବିଚାର୍ଯ୍ୟ ବିଷୟଗୁଡ଼ିକୁ ନୂତନ ଭାବେ ନିର୍ଦ୍ଧାରଣ କରିବାର ଅପରିହାର୍ଯ୍ୟ ପ୍ରୟୋଜନୀୟତା, ଯେତେବେଳେ କି ଦେଖାଯାଉଛି ଯେ ବିଶ୍ୱବ୍ୟାପୀ ସଶସ୍ତ୍ର ସଂଘର୍ଷ ଆରମ୍ଭ ହୋଇଗଲେ ତାହା ସମଗ୍ର ମାନବ ସଭ୍ୟତାକୁ ଧ୍ୱଂସ କରିଦେବ ।** ୧୯୭୦ ଦଶକରେ ଏ ପ୍ରୟୋଜନୀୟତା ଅତି ସ୍ପଷ୍ଟଭାବେ ଅନୁଭୂତ ହୋଇଥିଲା । ସେହି ସମୟରେ କମ୍ୟୁନିଷ୍ଟମାନେ ଏ ସମସ୍ୟା ସଂକ୍ରାନ୍ତରେ ଗବେଷଣା ଚଳାଇଥିଲେ ଯେ ବିଶ୍ୱ ରାଜନୀତିରେ ଶାନ୍ତି ପାଇଁ ସଂଗ୍ରାମ ଏକ ସ୍ୱତନ୍ତ୍ର ଘଟଣା ରୂପେ ଉପସ୍ଥିତ ହୋଇଥିବା ଦୃଷ୍ଟିରୁ ତାହାକୁ କେଉଁ ପ୍ରକାରର ଅଗ୍ରାଧିକାର ଦିଆଯିବ । ମାତ୍ର ଆସ୍ତେ ଆସ୍ତେ ୧୯୮୦ ଦଶକର ପ୍ରଥମାର୍ଦ୍ଧରେ ଅଧିକରୁ ଅଧିକ ସଂଖ୍ୟକ କମ୍ୟୁନିଷ୍ଟ ପାର୍ଟି ଏ ସିଦ୍ଧାନ୍ତରେ ପହଞ୍ଚିବାକୁ ଲାଗିଲେ ଯେ ଏ ସଂକ୍ରାନ୍ତ ଗବେଷଣା ଯେଉଁ ବିଷୟରେ ଆଲୋକପାତ କରିବା ଉଚିତ ତାହା ହେବ, **ବର୍ତ୍ତମାନ ପରିସ୍ଥିତିରେ ଶାନ୍ତି ପାଇଁ ସଂଗ୍ରାମ ଏବଂ ସାମାଜିକ ପ୍ରଗତି ତଥା ସାମାଜିକ ରୂପାନ୍ତର ନିମନ୍ତେ ଶ୍ରେଣୀ ସଂଗ୍ରାମ ଭିତରେ ପାରସ୍ପରିକ ସଂପର୍କ କ'ଣ ହେବା ଉଚିତ ।** ସେ ବିଷୟରେ

ଦରକାର ହେଉଛି ଶାନ୍ତି ପାଇଁ ସଂଗ୍ରାମର "ଅଗ୍ରାଧିକାର" ମୂଳକ କର୍ତ୍ତବ୍ୟ ଏବଂ ସାମାଜିକ ତଥା ବୈପ୍ଲବିକ ରୂପାନ୍ତର ନିମନ୍ତେ ଶ୍ରେଣୀ ସଂଗ୍ରାମ ଭିତରେ ପରସ୍ପର ସଂପର୍କ ନିର୍ଣ୍ଣୟ କରିଦେବା ଏବଂ ଏହା ସ୍ଥିର କରିବା ଯେ କମ୍ୟୁନିଷ୍ଟ ପାର୍ଟିମାନେ ବିପ୍ଳବୀ ପାର୍ଟିଭାବେ କାର୍ଯ୍ୟ କରିବାକୁ ପରିତ୍ୟାଗ ନ କରି ସୁଦ୍ଧା କିପରିଭାବରେ ସେମାନଙ୍କର ଶାନ୍ତି ସଂଗ୍ରାମକୁ ପରିଚାଳନା କରିବେ। ବର୍ତ୍ତମାନର ଏ ସମସ୍ତ ସମସ୍ୟାବଳୀର ସମାଧାନ ନିମନ୍ତେ ଏକ ଗଭୀର ତାତ୍ତ୍ୱିକ ଅନ୍ୱେଷଣ ଆଜି ଚାଲିଛି। ଯେଉଁଠାରେ ଶାନ୍ତି ତଥା ସାମାଜିକ ଓ ଅର୍ଥନୈତିକ ପ୍ରଗତିର ପ୍ରୟୋଜନୀୟତାଗୁଡ଼ିକ ଗୋଟିଏ ମାତ୍ର ସ୍ଥଳରେ ଅଙ୍ଗାଙ୍ଗୀଭାବେ ଜଡ଼ିତ ସେଠାରେ ସଂଗ୍ରାମର ପରିସର, କର୍ମକ୍ଷେତ୍ର ଓ ଲକ୍ଷ୍ୟ କଣ ହେବ ତାହା ସ୍ପଷ୍ଟ ରୂପେ ସ୍ଥିରୀକୃତ ହୋଇଯିବା ଜରୁରୀ। ଅନେକ କମ୍ୟୁନିଷ୍ଟ ପାର୍ଟି ବିଶ୍ୱାସ କରନ୍ତି ଯେ ଏସବୁ ପ୍ରୟୋଜନୀୟତାକୁ ସର୍ବାଧିକ ପରିମାଣରେ ଏକତ୍ରିତ କରାଯାଇପାରିବ ଅର୍ଥନୀତିର ସାମରିକୀକରଣ-ବିରୋଧୀ ସଂଗ୍ରାମରେ, ଯାହାକି ସମଗ୍ର ବିଶ୍ୱରେ ବିପଦ ବୃଦ୍ଧିର କାରଣ ହୋଇଛି (ତାହା ସଙ୍ଗେ ସଙ୍ଗେ ବ୍ୟାପକ ମାତ୍ରାରେ ଶ୍ରମଜୀବୀ ଜନସାଧାରଣଙ୍କ ଜୀବନଧାରଣର ମାନ ତଥା କାର୍ଯ୍ୟର ଅବସ୍ଥାକୁ ନିମ୍ନଗାମୀ କରିବା ଦିଗରେ ଏକ ଉପାଦାନ ହୋଇଛି)। ଏ ସଂକ୍ରାନ୍ତରେ ତାତ୍ତ୍ୱିକ ଅନ୍ୱେଷଣ ଫଳରେ ଶାନ୍ତି ପାଇଁ ସଂଗ୍ରାମ ଓ ସାମାଜିକ ତଥା ଅର୍ଥନୈତିକ ପ୍ରଗତି ପାଇଁ ସଂଗ୍ରାମ ମଧ୍ୟରେ ଥିବା ସଂପର୍କକୁ ପ୍ରତିଫଳନ କରୁଥିବା କେତେଗୁଡ଼ିଏ ମୂଲ୍ୟବାନ ଓ ସମ୍ଭାବନାପୂର୍ଣ୍ଣ ସୂତ୍ର ଓ ଧାରଣା ନିର୍ଣ୍ଣୟ କରିବା ସମ୍ଭବପର ହୋଇଥିଲା। ସେଗୁଡ଼ିକ ହେଲା ବେଲଜିୟମ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ଉତ୍‌ଥାପିତ ଶାନ୍ତି ଅର୍ଥନୀତିର ଧାରଣା, ଅଷ୍ଟ୍ରିଆ କମ୍ୟୁନିଷ୍ଟ ପାର୍ଟି ରଖିଥିବା ଏକଗୁଚ୍ଛ ସଂସ୍କାର ରାଜିର କାର୍ଯ୍ୟକ୍ରମ, ଜର୍ମାନ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପ୍ରସ୍ତାବିତ "ଶାନ୍ତି ଓ ଯୁକ୍ତିର ସମ୍ମିଳିତ" କାର୍ଯ୍ୟ ଓ "ନିରାପତ୍ତା ବ୍ୟାପାରରେ ଅଂଶୀଦାର" ହେବାର ଧାରଣା, ଜାପାନୀ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ଆଗତ "ନନ୍-ନିଉକ୍ଲିଅର ସରକାର"ର ପ୍ରସ୍ତାବ ତଥା ସ୍ପେନ କମ୍ୟୁନିଷ୍ଟ ପାର୍ଟି ପ୍ରଚାର କରୁଥିବା "ଶାନ୍ତି ଓ ସାମାଜିକ ପ୍ରଗତିର ଭିତ୍ତିରେ ବାମପନ୍ଥୀ ଶକ୍ତିମାନଙ୍କର ସମାଭିମୁଖୀନତା।"

ଏହି ସମସ୍ତ ଧାରଣା ଅନୁଯାୟୀ କମ୍ୟୁନିଷ୍ଟ ପାର୍ଟିମାନଙ୍କର ପ୍ରଧାନ କର୍ତ୍ତବ୍ୟ ରୂପେ ରଖାଯାଇଛି ସାମରିକ ଉତ୍ପାଦନକୁ ସୀମାବଦ୍ଧ କରିବା ନିମନ୍ତେ ଓ ତାହାକୁ କ୍ରମଶଃ ବେସାମରିକ ଉତ୍ପାଦନରେ ପରିଣତ କରିବା ନିମନ୍ତେ ସଂଗ୍ରାମ। ଉଦାହରଣ ସ୍ୱରୂପ, ଶାନ୍ତି ଅର୍ଥନୀତି ଧାରଣାରେ ପ୍ରତିଫଳିତ ହୋଇଛି ଅର୍ଥନୈତିକ ସଙ୍କଟରୁ ମୁକ୍ତିର ପଥ

ଖୋଜିବା ନିମନ୍ତେ ବେଲଜିୟମର ପ୍ରଗତିଶୀଳ ଶକ୍ତିମାନଙ୍କର ପ୍ରଚେଷ୍ଟା । ଜନ-ସାଧାରଣଙ୍କର ବ୍ୟକ୍ତିଗତ ଓ ସାମୂହିକ ପ୍ରୟୋଜନୀୟତାର ପୂରଣ ଦ୍ୱାରା ଏହା କରିବାକୁ ସେମାନେ ଚାହାନ୍ତି । ବେଲଜିୟମ କମ୍ୟୁନିଷ୍ଟ ପାର୍ଟିର ଅଧ୍ୟକ୍ଷ ଲୁଇ ଭାନଗେଟ କହନ୍ତି ଯେ ଏ ଲକ୍ଷ୍ୟର ପୂରଣ ନିମନ୍ତେ କାର୍ଯ୍ୟକ୍ରମର "...ଅର୍ଥ ହେଲା ଭୌତିକ ଓ ଆର୍ଥିକ ସମ୍ବଳର ଏକ ବଡ଼ ଅଂଶକୁ ଉପଯୋଗ କରିବା, ଆଉ ସେ ସମ୍ବଳକୁ ନିଶ୍ଚିତଭାବେ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାରୁ, ଯୁଦ୍ଧ ଅର୍ଥନୀତି ଭିତରୁ କାଢ଼ିଅଣାଯିବା ।"(୧) ଏହା ଉପରେ ବି ଗୁରୁତ୍ୱ ଦିଆଯାଇଅଛି ଯେ ଶାନ୍ତି ଅର୍ଥନୀତି ପାଇଁ ସଂଗ୍ରାମର ନିର୍ଦ୍ଦିଷ୍ଟ ସାମାଜିକ ଓ ଶ୍ରେଣୀଗତ ଦିଗ ରହିଛି, କାରଣ ଏ ସଂଗ୍ରାମ ହେଉଛି ଆଧୁନିକ ମନୋପୋଲି ବୁର୍ଜୁଆର ଚରମ ଦକ୍ଷିଣ ପନ୍ଥୀ ସମରବାଦୀ ଅଂଶ ବିରୋଧରେ, "ପ୍ରଗତିକାମୀ ଶକ୍ତିବର୍ଗଙ୍କର ଶ୍ରମିକ-ଶ୍ରେଣୀ ଓ ତାହାର ମିତ୍ରମାନଙ୍କର" ସଂଗ୍ରାମ । ଏ ସଂଗ୍ରାମର ବିଭାଜକ ରେଖା "...ସମାଜବାଦୀ ରୂପାନ୍ତରର ସମର୍ଥକ ଏବଂ ଯେଉଁମାନେ ପୁଞ୍ଜିବାଦର ମୂଲ୍ୟବୋଧରେ ଆସ୍ଥାବାନ ସେମାନଙ୍କ ଭିତରେ ଯାଇ ନାହିଁ, ଯାଇଛି ମାନବ ସଭ୍ୟତାର ଅସ୍ତିତ୍ୱ ରକ୍ଷାର ସମର୍ଥକ ଓ ସମରବାଦର ପ୍ରବକ୍ତାମାନଙ୍କ ମଧ୍ୟରେ ।" ଏ ସଂଗ୍ରାମର ପ୍ରକ୍ରିୟାରେ ଯେଉଁ ସଫଳତା ମିଳିବ ତାହା ନୂତନ ସ୍ତରକୁ, "ଏକ ସମାଜବାଦୀ ସମାଜକୁ ରୂପାନ୍ତରର ସମ୍ଭାବନା"(୨) ଆଡ଼କୁ ନେଇଯିବ ।

ଏହିପରିଭାବେ ବେଶ ମଜଭୁତ ଭିତ୍ତି ଉପରେ ନୂଆ ନୂଆ ଧାରଣା ଗଢ଼ି ଉଠୁଛି । ଏସବୁ ଧାରଣାର ଅଧିକ ବିକାଶ ନିମନ୍ତେ କମ୍ୟୁନିଷ୍ଟ ତାତ୍ତ୍ୱିକମାନେ ରାଜନୈତିକ କଳର ଉପାଦାନଗୁଡ଼ିକ ସମ୍ପର୍କରେ ବଡ଼ ଧରଣର ଏକ ଅନୁଶୀଳନର ପ୍ରୟୋଜନୀୟତା ଉପଲବ୍ଧି କରନ୍ତି, ଯେଉଁ ଉପାଦାନଗୁଡ଼ିକ ଶାନ୍ତି ଅର୍ଥନୀତିକୁ ଉତ୍ତରଣ ସୁନିଶ୍ଚିତ କରିବା ନିମନ୍ତେ ଅଧିକ ସମର୍ଥ ହେବ । ଏବେ ଏହା ବାରମ୍ବାର କୁହାଯାଉଅଛି ଯେ ଶାନ୍ତି ଅର୍ଥନୀତି ନିମନ୍ତେ ସଂଗ୍ରାମର ପରିପୂରକଭାବେ ସମ୍ଭବତଃ ଆସିବ ଏକ ଅସ୍ଥାୟୀ ରାଜନୈତିକ ସଙ୍ଗଠନ ନିମନ୍ତେ ସଂଗ୍ରାମ, ଯାହାକୁ "ଶାନ୍ତି ନିମନ୍ତେ ଏକ ଗଣତନ୍ତ୍ର" ଅଥବା ଏକ ସମରବାଦ-ବିରୋଧୀ (ଯୁଦ୍ଧ ବିରୋଧୀ) ଗଣତନ୍ତ୍ରଭାବେ ନାମିତ କରାଯିବ ।

କୌଣସି ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ଯେତେବେଳେ କି ଶାନ୍ତି ଏବଂ ସାମାଜିକ

---

(୧) ଓ୍ୱାର୍ଲ୍ଡ ମାର୍କିଷ୍ଟ ରିଭିଉ ସେପ୍ଟେମ୍ବର ୧୯୮୬, ପୃ: ୧୭ ।

(୨) ଓ୍ୱାର୍ଲ୍ଡ ମାର୍କିଷ୍ଟ ରିଭିଉ, ସେପ୍ଟେମ୍ବର ୧୯୮୬, ପୃ: ୨୦-୨୧ ।

ତଥା ଅର୍ଥନୈତିକ ପ୍ରଗତିର ପ୍ରୟୋଜନୀୟତା ସବୁ ମିଶିଯାଇ ଏକାକାର ହୋଇ ଯାଆନ୍ତି—ଶାନ୍ତି ଅର୍ଥନୀତି (ଶାନ୍ତି ପାଇଁ ଗଣତନ୍ତ୍ର)ର ପର୍ଯ୍ୟାୟ—ସେତେବେଳେ ଶାନ୍ତି ପାଇଁ ସଂଗ୍ରାମର ସମସ୍ୟାବଳୀ ପ୍ରତି ନୂତନ ଆଭିମୁଖ୍ୟ ଗ୍ରହଣ କରାଯିବା ଫଳରେ ମେଣ୍ଟ ଗଠନର କୌଶଳ କ୍ଷେତ୍ରରେ ନୂଆ ନୂଆ ପ୍ରବୃତ୍ତି ପରିଲକ୍ଷିତ ହୋଇଛି । ଉଦାହରଣ ସ୍ୱରୂପ ବେଲଜିୟମର କମ୍ୟୁନିଷ୍ଟମାନଙ୍କ ମତ ନିଆଯାଉ । ସେମାନଙ୍କ ବିଚାରରେ ଏହା ଏକାନ୍ତ ଜରୁରୀ ଯେ ଖ୍ରୀଷ୍ଟାନମାନେ, ଇଞ୍ଜିନିୟର, ବୈଜ୍ଞାନିକ, ମ୍ୟାନେଜର ତଥା ନୂତନ ଜନ ଆନ୍ଦୋଳନଗୁଡ଼ିକର ସଦସ୍ୟବୃନ୍ଦ ଏ ସଂଗ୍ରାମରେ ସକ୍ରିୟ ଭାବେ ଅଂଶ ଗ୍ରହଣ କରିବା ଉଚିତ । ବୁର୍ଜୁଆମାନଙ୍କର ସମରବାଦୀ ଅଂଶ-ବିରୋଧୀ ସଂଗ୍ରାମରେ ହୋଇଥିବା ମେଣ୍ଟଗୁଡ଼ିକର ଯଥା ସମ୍ଭବ ବୃହତ୍ତର ଭିତ୍ତି ରହିବା ଆବଶ୍ୟକ । କାରଣ, "…ବୁର୍ଜୁଆର କେତେକ ଅଂଶ ସହିତ ସହଯୋଗର ସମ୍ଭାବନା ରହିଛି, ଯେଉଁମାନଙ୍କ ମଧ୍ୟରେ ରହିଛନ୍ତି ବହୁଜାତିକ ପୁଞ୍ଜିପତିଙ୍କର କେତେକ ଅଂଶ ଯେଉଁମାନେ କି ଅସ୍ତ୍ରଶସ୍ତ୍ର ଉତ୍ପାଦନ ଅପେକ୍ଷା ଅର୍ଥନୈତିକ ବିନିମୟ ତଥା ଶାନ୍ତିପୂର୍ଣ୍ଣ ବିକାଶରେ ବେଶି ଆଗ୍ରହୀ ।"(୧)

ଏହି ବିଚାରଗୁଡ଼ିକୁ ବ୍ୟାଖ୍ୟା କରିବା ସମୟରେ କମ୍ୟୁନିଷ୍ଟମାନେ ଲେନିନଙ୍କ ଦ୍ୱାରା ୫୦ ବର୍ଷ ପୂର୍ବେ ନିର୍ଣ୍ଣୀତ ହୋଇଥିବା ସୁପରିଚିତ କୌଶଳଗତ ନୀତିକୁ ଅନୁସରଣ କରିଛନ୍ତି । ତାହା ହେଲା, "ଆନ୍ତର୍ଜାତିକ ବୁର୍ଜୁଆର ଶାନ୍ତିକାମୀ ଅଂଶକୁ ଗୋଟାକଯାକ ବୁର୍ଜୁଆ, ଆକ୍ରମଣଖୋର ବୁର୍ଜୁଆ, ପ୍ରତିକ୍ରିୟାଶୀଳ ବୁର୍ଜୁଆ ଶିବିରଠାରୁ ବିଚ୍ଛିନ୍ନ କରି ନେଇଯିବା ।"(୨)

ବ୍ୟାପକ ଯୁଦ୍ଧ-ବିରୋଧୀ ମିଳିତ ସାମ୍ମୁଖ୍ୟମାନ ଗଠନ କରିବା କର୍ତ୍ତବ୍ୟ ବିଷୟ ବିଚାର କରି ଅନେକ କମ୍ୟୁନିଷ୍ଟ ପାର୍ଟି ବର୍ତ୍ତମାନ କାଳର ପରିସ୍ଥିତିକୁ ୧୯୩୦ ଦଶକର ମଧ୍ୟବର୍ତ୍ତୀ ସମୟର ନାଜିବାଦ-ବିରୋଧୀ ସଂଗ୍ରାମ ସହିତ ତୁଳନା କରୁଛନ୍ତି । କମ୍ୟୁନିଷ୍ଟ ଇଣ୍ଟରନାସନାଲର ୭ମ କଂଗ୍ରେସରେ ନୂତନ ମୋଡ଼ର ପରିସର ଓ ତାତ୍ପର୍ଯ୍ୟ ସଂପର୍କରେ ଯାହା କୁହାଯାଇଥିଲା ତାହା ସହିତ ଆଜିର ରଣନୈତିକ ମୋଡ଼ର ପରିସର ଓ

---

(୧) **ଓ୍ୱାର୍ଲ୍ଡ ମାର୍କିଷ୍ଟ ରିଭିଉ,** ସେପ୍ଟେମ୍ବର ୧୯୮୭, ପୃ: ୨୦ ।

(୨) ଭି. ଆଇ. ଲେନିନ—**ସଂଗୃହୀତ ଗ୍ରନ୍ଥାବଳୀ,** ଖଣ୍ଡ-୪୨, ପୃ: ୪୦୩

ତାତ୍ପର୍ଯ୍ୟକୁ ତୁଳନା କରୁଛନ୍ତି ।(୩) ଆଜି କମ୍ୟୁନିଷ୍ଟ ପାର୍ଟିମାନେ ଏପରି ନୂତନ ନୀତିରାଜି ପାଇଁ ଅନ୍ୱେଷଣ ଚଳାଇଛନ୍ତି ଯାହା ନୂତନର ପ୍ରବର୍ତ୍ତନକୁ ପରମ୍ପରା ସହିତ ମିଳିତ କରିବ ।

ସମରବାଦ ଓ ଯୁଦ୍ଧ ବିପଦ ବିରୁଦ୍ଧରେ ମିତ୍ରମାନଙ୍କର ଏକ ବ୍ୟାପକ ମିଳିତ ସାମ୍ମୁଖ୍ୟ (ବାସ୍ତବବାଦୀ ଓ ଧୀରସ୍ଥିରଚିତ୍ତସଂପନ୍ନ ମନୋପୋଲି ବୁର୍ଜୁଆମାନଙ୍କ ଭିତରୁ ଏକ ଅଂଶ ସମେତ) ପାଇଁ ସମ୍ମିଳିତ ପ୍ରୟାସର ଉପଯୋଗିତା ହିଁ କମ୍ୟୁନିଷ୍ଟ ପାର୍ଟିମାନଙ୍କୁ ଅନୁପ୍ରାଣିତ କରିଛି ଯେ ମଧ୍ୟବର୍ତ୍ତୀକାଳୀନ ଲକ୍ଷ୍ୟ ନିମନ୍ତେ ସଂଗ୍ରାମର ସମସ୍ୟାବଳୀ ପ୍ରତି, ବିଶେଷଭାବେ ମନୋପୋଲି-ବିରୋଧୀ ଗଣତନ୍ତ୍ର ପ୍ରତିଷ୍ଠା ପାଇଁ ସଂଗ୍ରାମ ପ୍ରତି ନୂତନ ଆଭିମୁଖ୍ୟର ସନ୍ଧାନ ସେମାନେ କରନ୍ତୁ । ଅନେକ କମ୍ୟୁନିଷ୍ଟ ପାର୍ଟି ବିଚାର କରନ୍ତି ଯେ ମନୋପୋଲି ବୁର୍ଜୁଆର ଗୋଟିଏ ମାତ୍ର ଅଂଶ ବିରୋଧରେ ସଂଗ୍ରାମ—ସର୍ବାଧିକ ପ୍ରତିକ୍ରିୟାଶୀଳ ଅଂଶ-ବିରୋଧୀ ସଂଗ୍ରାମ—ହେଉଛି ସେମାନଙ୍କର ନଗଦ ଓ ପ୍ରତ୍ୟକ୍ଷ କର୍ତ୍ତବ୍ୟ । ଏହାର ପରିଣାମରେ ସାମଗ୍ରିକଭାବେ ମନୋପୋଲି ବୁର୍ଜୁଆ-ବିରୋଧୀ ସଂଗ୍ରାମ (ମନୋପୋଲି-ବିରୋଧୀ ଗଣତନ୍ତ୍ରର ସ୍ଥାପନା ନିମନ୍ତେ) ଅଗ୍ରଗତି କରିପାରେ—ଅତୀତର ଧାରଣା ତୁଳନାରେ ବିଶେଷ ପରିବର୍ତ୍ତିତ ରୂପରେ—ମାତ୍ର ତାହା ହେବ ସଂଗ୍ରାମର ପରବର୍ତ୍ତୀ ପର୍ଯ୍ୟାୟଗୁଡ଼ିକରେ ।

ନୂତନ ରଣନୀତି କାର୍ଯ୍ୟ କ୍ଷେତ୍ରରେ ଗଭୀରଭାବେ ଓ ବ୍ୟାପକ ଆକାରରେ ପରୀକ୍ଷିତ ହୋଇ ନାହିଁ । ହେଲେ, ପଶ୍ଚିମ ୟୁରୋପର ଅନେକ ପୁଞ୍ଜିବାଦୀ ଦେଶରେ କମ୍ୟୁନିଷ୍ଟ-ମାନଙ୍କୁ ଯେଉଁ ପ୍ରାଥମିକ ସଫଳତା ମିଳିଛି ତହିଁରୁ ଏ କୌଶଳଗତ ନୀତି ଯୋଗାଉଥିବା ଉତ୍ତମ ସୁଯୋଗଗୁଡ଼ିକର ସୂଚନା ମିଳେ । ଏହି ନୀତିକୁ ନିମ୍ନଲିଖିତ ସୂତ୍ରରେ ପ୍ରକାଶ କରିଯାଇପାରେ : **ଗଣତନ୍ତ୍ରସମ୍ମତ ଶାନ୍ତ ଏବଂ ମାଧ୍ୟମରେ, ସାମଗ୍ରିକ-ଭାବରେ ମନୋପୋଲି ପୁଞ୍ଜି ବିରୋଧରେ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସଂଗ୍ରାମକୁ ଆଗେଇ ନେବା** ( "ଡେମୋକ୍ରାଟିକ ଟର୍ଣ୍ଣ", "ଡେମୋକ୍ରାଟିକ ଅଲଟରନେଟିଭ" ଓ "ଆଣ୍ଟି-ମନୋପୋଲିଷ୍ଟିକ ଡିମୋକ୍ରାସି"ର ଢାଞ୍ଚା ଭିତରେ ) **ଏବଂ ତତ୍ପରେ—ବୈପ୍ଳବିକ, ସମାଜବାଦୀ ରୂପାନ୍ତରକୁ ଯିବା ।**

---

(୩) ଦ୍ରଷ୍ଟବ୍ୟ—**ଓାର୍ଲ୍ଡ ମାର୍କିଷ୍ଟ ରିଭିଉ,** ସେପ୍ଟେମ୍ବର ୧୯୮୭, ପୃ: ୬୦ ।

ଶାନ୍ତି ଓ ସାମାଜିକ ପ୍ରଗତି ନିମନ୍ତେ ସଂଗ୍ରାମରେ ଏକତା ପ୍ରଶ୍ନ ତୃତୀୟ ବିଶ୍ୱରେ ମଧ୍ୟ ଅନୁଭୂତ ହେଉଛି । ତୃତୀୟ ବିଶ୍ୱର ଦେଶମାନଙ୍କରେ ରହିଥିବା ପରିସ୍ଥିତିର ବିଶ୍ଳେଷଣରୁ କିପରି ଭାବରେ, ଦେଖାଯାଏ ଯେ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କର ବିଶାଳକାୟ ପୁଞ୍ଜି ବିନିଯୋଗ ଆଉ ଯୁଦ୍ଧୋପଯୋଗୀ କଞ୍ଚାମାଲ ନିମନ୍ତେ ସେମାନଙ୍କର ଦ୍ରୁତ ବୃଦ୍ଧିପ୍ରାପ୍ତ ଗୃହଦ୍ୱାର ପରିଣାମ ସ୍ୱରୂପ ନବସ୍ୱାଧୀନ ଦେଶ ସମୂହର ଜାତିମାନଙ୍କ ଉପରେ ଆଧୁନିକ ସାମ୍ରାଜ୍ୟବାଦର ସାମରିକ-ଶିଳ୍ପ ସମାହାର କିପରି ଅତିଶୟ ଶୋଷଣ ଚଳାଇଛି । ନବ ଉପନିବେଶବାଦୀ ଶୋଷଣର ପଦ୍ଧତିକୁ ରକ୍ଷା କରିବା ଓ ଅଧିକ ଶକ୍ତିଶାଳୀ କରିବାରେ ସମରବାଦର ପ୍ରତ୍ୟକ୍ଷ ସ୍ୱାର୍ଥ ରହିଛି । ତେଣୁ ଶାନ୍ତି ନିମନ୍ତେ ଓ ସମରବାଦ ବିରୋଧରେ ନବସ୍ୱାଧୀନ ଦେଶମାନଙ୍କର ସଂଗ୍ରାମ ହେଲା ସାମ୍ରାଜ୍ୟବାଦ ଅତି-ଶୋଷଣ ବିରୁଦ୍ଧରେ ମଧ୍ୟ ସଂଗ୍ରାମ, ଏକ ନୂତନ ଓ ନ୍ୟାୟସଙ୍ଗତ ଆନ୍ତର୍ଜାତିକ ଅର୍ଥନୈତିକ ବ୍ୟବସ୍ଥା ସପକ୍ଷରେ ବି ସଂଗ୍ରାମ ।

ଅନ୍ୟପକ୍ଷରେ, ଏ ସଂସାରରେ ସ୍ଥାୟୀ ଶାନ୍ତି କଦାପି ହାସଲ କରାଯାଇ ପାରିବ ନାହିଁ, ଯଦି ଏ ଦିଗରେ ହେଉଥିବା ପ୍ରୟାସକୁ ସାମାଜିକ ପ୍ରଗତି ତଥା ସାମାଜିକ ରୂପାନ୍ତର ନିମନ୍ତେ ଶ୍ରେଣୀ ସଂଗ୍ରାମ ସହିତ ସଂଯୁକ୍ତ କରା ନଯାଏ । ଏହା ହେଉଛି ସମସ୍ୟାର ଗୋଟିଏ ଦିଗ । ଅନ୍ୟ ପକ୍ଷରେ, ସ୍ଥାୟୀ ଶାନ୍ତି ପ୍ରତିଷ୍ଠା କରିବା ଶ୍ରମଜୀବୀ ଜନସାଧାରଣଙ୍କ ମୌଳିକ ସ୍ୱାର୍ଥର ଅନୁକୂଳ ହେଲେ ସୁଦ୍ଧା ଶ୍ରମିକ ଓ କମ୍ୟୁନିଷ୍ଟ ଆନ୍ଦୋଳନର ଅନେକଗୁଡ଼ିଏ ଅତି ପ୍ରୟୋଜନ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ କର୍ତ୍ତବ୍ୟକୁ ଏହା ସିଧାସଳଖ ପୂରଣ କରି ପାରିବ ନାହିଁ । ଯେତେହେଲେ, ପୁଞ୍ଜିବାଦୀ ସମାଜର ସ୍ୱ-ବିରୋଧିତା, ବିକାଶଶୀଳ ଦେଶମାନଙ୍କ ଉପରେ ହେଉଥିବା ନବ ଉପ-ନିବେଶବାଦୀ ଧରଣର ଶୋଷଣ, ଆଉ ବିଶ୍ୱର ସମାଜ ବ୍ୟବସ୍ଥାଗୁଡ଼ିକ ମଧ୍ୟରେ ରହିଥିବା ମୌଳିକ ପାର୍ଥକ୍ୟ—ଏ ସମସ୍ତ ବିଷୟ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଅବସ୍ଥାରେ ରହିଥାଏ । ଆଉ ଏହାର ଅର୍ଥ ହେଲା ନବସ୍ୱାଧୀନ ଜାତିମାନଙ୍କର ସାମ୍ରାଜ୍ୟବାଦ-ବିରୋଧୀ ସଂଗ୍ରାମ ଭଳି ଶ୍ରେଣୀ ସଂଗ୍ରାମ ମଧ୍ୟ ଚାଲୁ ରହିଛି, ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ପୁଞ୍ଜିବାଦ ପ୍ରତି ସମାଜବାଦର ବିରୋଧ ଜାରି ରହିଛି । କମ୍ୟୁନିଷ୍ଟମାନଙ୍କର ପୂର୍ଣ୍ଣ ବିଶ୍ୱାସ ଯେ ସମାଜବାଦ ଏକ ଉନ୍ନତ ସମାଜ ବ୍ୟବସ୍ଥା ହୋଇଥିବା ହେତୁ, ପୁଂଜିବାଦ ସହିତ ସଂଗ୍ରାମରେ ଏହାର ପ୍ରାଧାନ୍ୟ ସାବ୍ୟସ୍ତ କରିବ । ହେଲେ, ଏହା ବଳ ପ୍ରୟୋଗ ଦ୍ୱାରା ହେବ ନାହିଁ, କମ୍ୟୁ ବିପ୍ଳବ ରପ୍ତାନି କରିବା ଜରିଆରେ ହେବ ନାହିଁ ।

ତେଣୁ ଆମେ ଲକ୍ଷ୍ୟ କରୁ ଯେ ଶାନ୍ତି ପାଇଁ ସଂଗ୍ରାମ ଏବଂ ସାମାଜିକ ଓ ଶ୍ରେଣୀ ସଂଗ୍ରାମ ମଧ୍ୟରେ ସାଂଗଠନିକ ସଂଯୋଗ ସ୍ଥାପନର ପ୍ରୟୋଜନୀୟତା ସମ୍ବନ୍ଧରେ ମାର୍କସ-ବାଦର ପ୍ରତିଷ୍ଠାତାମାନେ ଯେଉଁ ରଣକୌଶଳଗତ ବିଚାର ନିର୍ଣ୍ଣୟ କରିଥିଲେ, ତାହା ହିଁ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର ମୌଳିକ ତତ୍ତ୍ୱଗତ ମତ ହୋଇ ରହିଛି । ପରମାଣୁ ଯୁଗର ନୂତନ ବାସ୍ତବତା ସହିତ ଖାପଖୁଆଇ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନ ସେହି ବିଚାରକୁ ଅଧିକ ବିକଶିତ କରୁଛି ।

# ଆନ୍ତର୍ଜାତିକତାବାଦ—ଇତିହାସ ଓ ଆଧୁନିକ ଯୁଗ

୧୯୮୦ ଦଶକ ଥିଲା ଏପରି ଏକ ସମୟ ଯେତେବେଳେକି ମାନବ ଜାତି ଐତିହାସିକ ତାତ୍ପର୍ଯ୍ୟସମ୍ପନ୍ନ ଏକ ସୀମାରେ ଉପନୀତ ହେଲା—ଏକ ଅଖଣ୍ଡ ବିଶ୍ୱର ଗଠନ ଆରମ୍ଭ ହୋଇଗଲା, ଯେଉଁ ବିଶ୍ୱର ବୈଶିଷ୍ଟ୍ୟ ହେଲା ବିଭିନ୍ନ ଦେଶ ଓ ଜାତି-ମାନଙ୍କ ମଧ୍ୟରେ ଏକ ଦୃଢ଼ ଓ ବହୁମୁଖୀ ପାରସ୍ପରିକ ନିର୍ଭରଶୀଳତା ।

ଏହି ପାରସ୍ପରିକ ନିର୍ଭରଶୀଳତା ଆଜି ସତ୍ୟ ସାବ୍ୟସ୍ତ ହୋଇଛି । ଏକ ପ୍ରବୃତ୍ତିର ଏହା ହେଉଛି ପୂର୍ଣ୍ଣତା ପ୍ରାପ୍ତି ଯାହାକୁ ୧୪୦ ବର୍ଷ ପୂର୍ବେ, **କମ୍ୟୁନିଷ୍ଟ ପାର୍ଟିର ଇତିହାସ**ରେ ମାର୍କସ ଓ ଏଙ୍ଗେଲସ ରୂପ ଦେଇଥିଲେ ଓ ବ୍ୟାଖ୍ୟାନ କରିଥିଲେ ନିମ୍ନ ଭାଷାରେ : "ପୂର୍ବକାଳର ସ୍ଥାନୀୟ ଓ ଜାତୀୟ ବିଚ୍ଛିନ୍ନତା ତଥା ଆତ୍ମ-ନିର୍ଭରଶୀଳତା ସ୍ଥାନରେ ଆମର ବର୍ତ୍ତମାନ ଆସିଛି ସବୁ ଦିଗରେ ପାରସ୍ପରିକ ମିଳାମିଶା, ଜାତିମାନଙ୍କ ମଧ୍ୟରେ ପାରସ୍ପରିକ ନିର୍ଭରଶୀଳତା । ଆଉ ଭୌତିକ ଉତ୍ପାଦନ କ୍ଷେତ୍ରରେ ଯେମିତି, ସେମିତି ମଧ୍ୟ ବୌଦ୍ଧିକ ଉତ୍ପାଦନ କ୍ଷେତ୍ରରେ ।"(୧)

ଏଭଳି ପାରସ୍ପରିକ ସମ୍ପର୍କ ଓ ନିର୍ଭରଶୀଳତା ଊନବିଂଶ ଶତାବ୍ଦୀରେ ମଧ୍ୟ କେତେକାଂଶରେ ରହିଥିଲା । ଆନ୍ତର୍ଜାତିକତାବାଦୀ ଚେତନା ଓ ଆନ୍ତର୍ଜାତିକତାବାଦୀ କ୍ରିୟାକଳାପର ମୂଳ ସୂତ୍ର ଥିଲା ଏ ଅବସ୍ଥା । ମାତ୍ର ଏତେ ଅଧିକ ପରିମାଣର ସଂହତି ଓ ଏକତା ବିଷୟ ପୃଥିବୀ ସେତେବେଳେ ଜାଣି ନଥିଲା ଯାହା ଆଜି ଜାଣୁଛି । ଏପରି କର୍ତ୍ତବ୍ୟ ଓ ସମସ୍ୟାମାନଙ୍କର ଏବେ ଉଦ୍‌ଭବ ହୋଇଛି ଯାହାକୁ ଜାତୀୟ ସ୍ତରରେ

---

(୧) କାର୍ଲମାର୍କସ ଓ ଫ୍ରେଡରିକ ଏଙ୍ଗେଲସ—
**ସଂଗୃହୀତ ଗ୍ରନ୍ଥାବଳୀ**, ଖଣ୍ଡ-୬, ପୃ: ୪୮୮ ।

ସମାଧାନ କରାଯାଇ ପାରିବ ନାହିଁ । ଏହା ସମଗ୍ର ମାନବ ସମାଜର ମିଳିତ ଓ ଐକ୍ୟବଦ୍ଧ ପ୍ରୟାସ ପ୍ରୟୋଜନ କରେ । ଏ ସମସ୍ୟାମାନଙ୍କ ଭିତରେ ରହିଛି ସର୍ବଜନୀନ ଶାନ୍ତି ହାସଲ, ମାନବ ସଭ୍ୟତାର ସୁରକ୍ଷା, ପରିବେଶର ରକ୍ଷଣାବେକ୍ଷଣ, ନୂତନ ଶକ୍ତି ସମ୍ବଳ ନିମନ୍ତେ ଅନ୍ୱେଷଣ, ଏକ ନୂତନ ବିଶ୍ୱ ଅର୍ଥନୈତିକ ବ୍ୟବସ୍ଥାର ସ୍ଥାପନା ଏବଂ ଆହୁରି ଅନେକ ଅନେକ ସମସ୍ୟା । ସ୍ୱଭାବତଃ, ଏ ସମସ୍ୟାଗୁଡ଼ିକର ସମାଧାନ ନିମନ୍ତେ ପ୍ରୟୋଜନ ହେଉଛି ଆନ୍ତର୍ଜାତିକ କର୍ତ୍ତବ୍ୟର ଆଧେୟ ସଂପର୍କରେ ତଥା ଶ୍ରେଣୀ ଓ ସାଧାରଣ ମାନବୀୟ ଲକ୍ଷ୍ୟରାଜି ଭିତରେ ଚାଲିଥିବା ସମ୍ପର୍କ ସମ୍ବନ୍ଧରେ ଅଧିକ ଗଭୀର ଧାରଣା । ଏହି ସମସ୍ୟାଗୁଡ଼ିକର ଜାତୀୟ ଓ ଆନ୍ତର୍ଜାତିକ ଦିଗମାନଙ୍କ ସମ୍ପର୍କରେ ମଧ୍ୟ ଗଭୀର ଧାରଣା ରହିବା ଆବଶ୍ୟକ । ଆଜି କମ୍ୟୁନିଷ୍ଟମାନେ ଆନ୍ତର୍ଜାତିକତାବାଦର ତତ୍ତ୍ୱ ଓ ଇତିହାସ ସମ୍ପର୍କରେ ଏକ ନୂତନ ଅଧ୍ୟାୟ ଲେଖିବା ଓ ପ୍ରାଞ୍ଜଳ କରିବା ଦିଗରେ ସକ୍ରିୟଭାବେ କାମ ଆରମ୍ଭ କରି ଦେଇଛନ୍ତି ।

କମ୍ୟୁନିଷ୍ଟମାନେ ବିଚାର କରନ୍ତି ଯେ ସମଗ୍ର ବିଶ୍ୱର ଶାନ୍ତିକାମୀ ଶକ୍ତିମାନଙ୍କ ମଧ୍ୟରେ ଆନ୍ତର୍ଜାତିକ ସଂହତି ସ୍ଥାପନ କରିବା ଓ ଦୃଢ଼ ଆନ୍ତର୍ଜାତିକ ସମ୍ପର୍କ ସ୍ଥାପନ କରିବା ହେଉଛି ଆଧୁନିକ ଯୁଗର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଅଭୂତପୂର୍ବ କାର୍ଯ୍ୟ, ଯେହେତୁ ଏ ଶକ୍ତିମାନଙ୍କର ମିଳନ ଫଳରେ "ଶାନ୍ତି, ଯୁକ୍ତିଯୁକ୍ତ ବିଚାର ଓ ସଦିଚ୍ଛାର ଏକ ବିରାଟ ସମ୍ଭାବନା"(୧) ସୃଷ୍ଟି ହେବ ।

**ଓ୍ୱାର୍ଲ୍ଡ ମାର୍କ୍ସିଷ୍ଟ ରିଭିଉ**ର ୧୯୮୭ ଜୁଲାଇ ସଂଖ୍ୟାରେ ଡେନମାର୍କ କମ୍ୟୁନିଷ୍ଟ ପାର୍ଟିର ଚେୟାରମ୍ୟାନ ଜରଗେନ ଜେନସେନ ସାମ୍ରାଜ୍ୟବାଦ ଓ ପ୍ରତିକ୍ରିୟା ବିରୋଧରେ ଏବଂ ଶାନ୍ତି ଓ ସାମାଜିକ ପ୍ରଗତି ନିମନ୍ତେ ସଂଗ୍ରାମରେ "ପରସ୍ପରଠାରୁ ଭିନ୍ନ ରୂପର ରାଜନୈତିକ ଓ ସାମାଜିକ ଆନ୍ଦୋଳନଗୁଡ଼ିକ ମଧ୍ୟରେ ସହଯୋଗ ସ୍ଥାପନ"(୧) ସପକ୍ଷରେ ଲେଖିଥିଲେ । ଫରାସୀ କମ୍ୟୁନିଷ୍ଟ ପାର୍ଟିର ୨୫ତମ କଂଗ୍ରେସରେ "ଯେଉଁ ଦେଶମାନେ ବିକାଶର ସମାଜବାଦୀ ମାର୍ଗ ଗ୍ରହଣ କରିଛନ୍ତି ସେମାନଙ୍କର ଶାନ୍ତିପୂର୍ଣ୍ଣ

(୧) ମିଖାଇଲ ଗୋର୍ବାଚେଭ—**ସି. ପି. ଏସ. ୟୁ. କେନ୍ଦ୍ର କମିଟିର ୨୭ତମ ପାର୍ଟି କଂଗ୍ରେସରେ ପ୍ରଦତ୍ତ ରାଜନୈତିକ ରିପୋର୍ଟ**, ନୋଭୋଷ୍ଟି ପ୍ରେସ ଏଜେନ୍‌ସି, ମସ୍କୋ-୧୯୮୭, ପୃଷ୍ଠା-୮୭ ।

(୨) **ଓ୍ୱାର୍ଲ୍ଡ ମାର୍କ୍ସିଷ୍ଟ ରିଭିଉ**, ଜୁଲାଇ ୧୯୮୭, ପୃ: ୧୨ ।

ଉଦ୍ୟୋଗ" ଏବଂ "ଶାନ୍ତି ନିମନ୍ତେ ଚାଲିଥିବା ସମଗ୍ର ଜନ ଆନ୍ଦୋଳନ, ଗୋଷ୍ଠୀ ନିରପେକ୍ଷ ଦେଶବର୍ଗ ଓ ଅନ୍ୟାନ୍ୟ ପ୍ରଧାନ ସାମାଜିକ ଓ ରାଜନୈତିକ ଶକ୍ତିବୃନ୍ଦଙ୍କର ମିଶ୍ରଣ କର୍ତ୍ତବ୍ୟ" ପ୍ରତି ବିଶେଷ ଦୃଷ୍ଟି ଦିଆଯାଇଥିଲା ।

ପାରମାଣବିକ ଧ୍ୱଂସର ବିପଦ ବିରୁଦ୍ଧରେ ଯେଉଁ ସମନ୍ୱିତ ବିଶ୍ୱବ୍ୟାପୀ ସଂଗ୍ରାମ ଚାଲିଛି ତହିଁରେ ଅନେକ ଶ୍ରେଣୀ ଓ ସାମାଜିକ ସ୍ତର ସକ୍ରିୟ ଭୂମିକା ଗ୍ରହଣ କରି ପାରନ୍ତି ; ଶାନ୍ତିର ଶକ୍ତିମାନଙ୍କର ଆନ୍ତର୍ଜାତିକ ସଂହତି ଆନ୍ଦୋଳନ କେବଳ ସେତିକିବେଳେ ବୃଦ୍ଧି ପାଇବ ଯେତେବେଳେ କି ଅନେକ ଶ୍ରେଣୀ ଏଥିରେ ଯୋଗ ଦେବେ । ଅଧିକନ୍ତୁ ଏ ଆନ୍ଦୋଳନର ଆନ୍ତର୍ଜାତିକ ପରିସରରେ ସମଗ୍ର ମାନବଜାତି ଅନ୍ତର୍ଭୁକ୍ତ ହୋଇଛି । ଏହି ସଂହତିର ଧାରଣା, ତାର ଆଧେୟ, ଏବଂ ଏଥିରେ ଅଂଶ ଗ୍ରହଣ କରୁଥିବା ସାମାଜିକ ଓ ରାଜନୈତିକ ଶକ୍ତିମାନଙ୍କ ଉପରେ ବର୍ତ୍ତମାନ ସମୟର କମ୍ୟୁନିଷ୍ଟ ଆନ୍ଦୋଳନର ଅବିରାମ ଦୃଷ୍ଟି ରହିଛି ।

ଆଧୁନିକ ଦୁନିଆର ଦେଶମାନଙ୍କର ପାରସ୍ପରିକ ଅର୍ଥନୈତିକ ନିର୍ଭରଶୀଳତା ଫଳରେ ମଣିଷ ଜାତି ନୂତନ ଓ ଗୁରୁତର ଆନ୍ତର୍ଜାତିକ କର୍ତ୍ତବ୍ୟର ସମ୍ମୁଖୀନ ହୋଇଛି । ଆଧୁନିକ ଉତ୍ପାଦିକା ଶକ୍ତିମାନଙ୍କର କ୍ରମବର୍ଦ୍ଧିଷ୍ଣୁ ପ୍ରୟୋଜନୀୟତା ସକାଶେ ଏଇଭଳି ପାରସ୍ପରିକ ନିର୍ଭରଶୀଳତା ଆବଶ୍ୟକ, ଠିକ୍ ଯେମିତି ଏଥି ସକାଶେ ଆବଶ୍ୟକ ଏକ ନୂତନ ବିଶ୍ୱ ଅର୍ଥନୈତିକ ବ୍ୟବସ୍ଥାର ସ୍ଥାପନା । ଆଜି ସେଇ ଶକ୍ତିମାନଙ୍କର ବିକାଶ ଯୋଗୁଁ ବିଶ୍ୱ ଅର୍ଥନୀତି ଓ ଅର୍ଥନୈତିକ ସମ୍ପର୍କ କ୍ଷେତ୍ରରେ ଯୁକ୍ତିଯୁକ୍ତ ବିଧିବିଧାନର ଭୂମିକାର ବିଶେଷ ସଂପ୍ରସାରଣ ଆବଶ୍ୟକ ହେଉଛି । ଅର୍ଥନୈତିକ ପରିଚାଳନାର ପୁଞ୍ଜିବାଦୀ ପ୍ରଣାଳୀ ଯହିଁରେ ମୁନାଫା ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରାଯାଇଥାଏ, ବ୍ୟକ୍ତି ବିଶେଷର ଦରେଇ ଉତ୍ପାଦନ ପାଇଁ ବ୍ୟଗ୍ରତା ଏବଂ "ସମଗ୍ର"ର ଆବଶ୍ୟକତା ପ୍ରତି ଉଦାସୀନତା, ପୁଞ୍ଜିବାଦୀ ବ୍ୟବସ୍ଥାରେ ଥିବା ପ୍ରତିଯୋଗିତା ଓ ପଣ୍ୟ ବଜାରର ଯଥେଚ୍ଛାଚାର—ଏସବୁ ପ୍ରବୃତ୍ତି ଆଧୁନିକ ବିଶ୍ୱ ଉତ୍ପାଦିକା ଶକ୍ତିମାନଙ୍କର ବିକାଶ କ୍ଷେତ୍ରରେ ଅସ୍ଥିରତାର ଅବସ୍ଥା ସୃଷ୍ଟି କରେ ।

ଅତଏବ ସେହି ଉତ୍ପାଦିକା ଶକ୍ତିସମୂହ ଯେଉଁମାନେ କି କ୍ରମେ ଅଧିକମାତ୍ରାରେ ଏକକ ଅଖଣ୍ଡ ସମଷ୍ଟି ହୋଇ ଯାଉଛନ୍ତି, ଆଉ ଯାହା ସମଗ୍ର ମାନବ ସମାଜର ଅଧିକାରାଧୀନ, ତାହାକୁ ପୃଥିବୀର କେତେକ ଅଂଶରେ **ମନୋପୋଲିମାନଙ୍କର ଏକ ସଂକୀର୍ଣ୍ଣ ଗୋଷ୍ଠୀର ବ୍ୟକ୍ତିଗତ ସମ୍ପତ୍ତି**ଭାବେ ବ୍ୟବହାର କରାଯାଉଛି ।

ଏହା ହୋଇଛି ସବୁ ଦେଶ ପାଇଁ ଏବଂ ସମଗ୍ର ବିଶ୍ୱ ଅର୍ଥନୀତି ନିମନ୍ତେ ସର୍ବାପେକ୍ଷା ବଡ଼ ବିପଦ । ଆଜି କମ୍ୟୁନିଷ୍ଟମାନେ ଏହି ବିପଜ୍ଜନକ ଘଟଣା ପ୍ରବାହ ଉପରେ ଗୁରୁତ୍ୱ ଦେଉଛନ୍ତି ଏବଂ ଏ ବିପଦକୁ ଦୂର କରିବା ପାଇଁ ସେମାନଙ୍କ ସଂଗ୍ରାମରେ ଯୋଗ ଦେବା ସକାଶେ ସବୁ ଗଣତାନ୍ତ୍ରିକ ଓ ପ୍ରଗତିଶୀଳ ଆନ୍ଦୋଳନକୁ ଆହ୍ୱାନ କରୁଛନ୍ତି । ଅନେକ କମ୍ୟୁନିଷ୍ଟ ପାର୍ଟି ଏ ଆଶାରେ ନିମ୍ନଲିଖିତ ଦାବୀମାନ ଉପସ୍ଥାପନ କରୁଛନ୍ତି ଯେ ବିଶ୍ୱ ଅର୍ଥନୈତିକ କ୍ଷେତ୍ରରେ ଆନ୍ତର୍ଜାତିକ ସହତି ସ୍ଥାପନର ଏହା ଏକ ମଞ୍ଚ ହେବ : ଏକ ନୂତନ ଅର୍ଥନୈତିକ ବ୍ୟବସ୍ଥାର ପ୍ରବର୍ତ୍ତନ ଯାହା ସବୁ ରାଷ୍ଟ୍ରର ସମାନ ଅର୍ଥନୈତିକ ନିରାପତ୍ତାର ଗ୍ୟାରେଣ୍ଟି ଦେବ ; ଅର୍ଥନୈତିକ ଅବରୋଧ ଓ ବାସନ୍ଦ ଲଗିବାର ନୀତିକୁ ପରିହାର କରିବ ; ଋଣ ସମସ୍ୟାର ନ୍ୟାୟସଙ୍ଗତ ସମାଧାନ କରିବ ; ସାମରିକ ବଜେଟକୁ ଊଣା କରିବା ଫଳରେ ଯେଉଁ ସମ୍ବଳ ବଳିବ ତାହାର କେତେକ ଅଂଶକୁ ବିଶ୍ୱର ଜନସମାଜର, ବିଶେଷଭାବେ ବିକାଶଶୀଳ ଦେଶମାନଙ୍କର କଲ୍ୟାଣାର୍ଥେ ବ୍ୟୟ କରିବ ; ପୃଥିବୀର ସମୁଦ୍ର ଓ ମହାକାଶର ଶାନ୍ତିପୂର୍ଣ୍ଣ ବ୍ୟବହାର କରିବା ଓ ସେଥିପାଇଁ ଗବେଷଣା ଚଳାଇବା ଲକ୍ଷ୍ୟରେ ସମ୍ମିଳିତ ଚେଷ୍ଟା କରିବ ; ବାଣିଜ୍ୟିକ ଓ ବୈଜ୍ଞାନିକ ତଥା କାରିଗରୀ ସହଯୋଗର ସଂପ୍ରସାରଣ କରିବ । ଉଦାହରଣ ସ୍ୱରୂପ, ବିଶ୍ୱ ଅର୍ଥନୈତିକ ଯୋଗାଯୋଗ କ୍ଷେତ୍ରରେ ବାଧା ସୃଷ୍ଟି କରୁଥିବା ପ୍ରସଙ୍ଗମାନଙ୍କର ଆଲୋଚନା ନିମନ୍ତେ ସୋଭିଏତ କମ୍ୟୁନିଷ୍ଟମାନେ ପ୍ରସ୍ତାବ ଦେଇଛନ୍ତି ଯେ ଅର୍ଥନୈତିକ ନିରାପତ୍ତା ସମସ୍ୟା ସଂକ୍ରାନ୍ତରେ ଆଲୋଚନା ନିମନ୍ତେ ଏକ ବିଶ୍ୱ କଂଗ୍ରେସ ଅନୁଷ୍ଠିତ ହେଉ ଏବଂ ଏ ଗ୍ରହରେ ବାସ କରୁଥିବା ସମସ୍ତ ଗଣତାନ୍ତ୍ରିକ ଶକ୍ତି ଏଥିରେ ଯୋଗ ଦିଅନ୍ତୁ । ଆଜିର ଆନ୍ତର୍ଜାତିକ ସଂହତି ଆନ୍ଦୋଳନର ଏହା ଅନ୍ୟ ଏକ ଦିଗ ।

ଆନ୍ତର୍ଜାତିକ ସଂହତିର ନୂଆ ନୂଆ ରୂପକୁ ନିର୍ଦ୍ଦିଷ୍ଟ କରିବା ସମୟରେ କମ୍ୟୁନିଷ୍ଟ-ମାନଙ୍କୁ, ସେଇ ସହତିର ଅଧିକ ବିକାଶ କ୍ଷେତ୍ରରେ ଯେଉଁମାନଙ୍କୁ ଅଗ୍ରଣୀ ଭୂମିକା ଗ୍ରହଣ କରିବାକୁ ହେବ ସେମାନଙ୍କୁ ଏ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ୁଛି ଯେ ସର୍ବହରାର ଆନ୍ତର୍ଜାତିକ ସଂହତି ସହିତ ଏହି ନୂତନ ରୂପସମୂହର କିଭଳି ସମ୍ପର୍କ ଅଛି, ଯାହାର ଧାରଣାକୁ **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାରରେ** ସୁସ୍ପଷ୍ଟରୂପେ ଓ ବିସ୍ତାରିତଭାବରେ ବିସ୍ତାନ କରାଯାଇଥିଲା ଏବଂ ଯାହାକି କମ୍ୟୁନିଷ୍ଟମାନଙ୍କର ଓ ଶ୍ରମିକ ଶ୍ରେଣୀର ଏକ ପରମ୍ପରା ହୋଇଯାଇଛି ।

ଶାନ୍ତି ପାଇଁ ସଂଗ୍ରାମ ଏବଂ ସମାଜବାଦ ନିମନ୍ତେ ସାମାଜିକ ଓ ଶ୍ରେଣୀ ସଂଗ୍ରାମ

ମଧ୍ୟରେ ପାରସ୍ପରିକ ସମ୍ପର୍କର ପ୍ରଶ୍ନ ଯେଉଁଭଳି କଠିନ ଥିଲା ଏ ପ୍ରଶ୍ନ ମଧ୍ୟ ସେହିଭଳି ଜଟିଳ ହୋଇଛି । ଦୁଇଟି ବିରୋଧୀ ପ୍ରବଣତା ଏଠାରେ ଦେଖା ଦେଇଛି ।

ଶାନ୍ତି ପାଇଁ ସଂଗ୍ରାମର କର୍ତ୍ତବ୍ୟକୁ ଯେଉଁମାନେ ପରମ ଅପରିହାର୍ଯ୍ୟତା ବୋଲି ବିଗ୍ରହ କରନ୍ତି ସେମାନେ ଏ ସିଦ୍ଧାନ୍ତରେ ପହଞ୍ଚନ୍ତି ଯେ ସାମାଜିକ ଓ ଶ୍ରେଣୀ ସଂଗ୍ରାମର ଲକ୍ଷ୍ୟ ହେଉଛି କମ୍ ଗୁରୁତ୍ୱପୂର୍ଣ୍ଣ ଓ ତାହାକୁ "ଅନ୍ୟ ଏକ ଦିନ" ଯାଏ ଗଡ଼େଇ ଦେବା ଏବେ ଆବଶ୍ୟକ ; ପୁଣି, ପୁଞ୍ଜିବାଦ ବିରୋଧରେ ପ୍ରତ୍ୟକ୍ଷ ସଂଗ୍ରାମର ସ୍ଲୋଗାନ ହିସାବରେ ଆନ୍ତର୍ଜାତିକ ସର୍ବହରା ସଂହତିର ସ୍ଲୋଗାନକୁ ପରିତ୍ୟାଗ କରାଯିବା ଉଚିତ ।

ଅନ୍ୟ ପ୍ରବଣତାଟି ଏହା ଉପରେ ବିଶେଷ ଗୁରୁତ୍ୱ ଦିଏ ଯେ ସର୍ବହରାର ଆନ୍ତର୍ଜାତିକ ସଂହତି ହେଉଛି କମ୍ୟୁନିଷ୍ଟମାନଙ୍କର ଆନ୍ତର୍ଜାତିକ ରଣନୀତି । ଏହି ତତ୍ତ୍ୱ ଉପରେ ଏହା ଆଧାରିତ ଯେ ଆଜି କମ୍ୟୁନିଷ୍ଟମାନଙ୍କର ସର୍ବ ପ୍ରଧାନ ଲକ୍ଷ୍ୟ ହେଲା ସମାଜବାଦୀ ବିପ୍ଳବ, ଯେତେବେଳେ କି ଶାନ୍ତି ପାଇଁ ସଂଗ୍ରାମ ହେଲା ଗୌଣ ଲକ୍ଷ୍ୟ ଓ ପ୍ରଥମଠାରୁ ନ୍ୟୂନ । ଏ କ୍ଷେତ୍ରରେ ଶାନ୍ତି ପାଇଁ ସଂଗ୍ରାମ ବ୍ୟାପାରରେ ଆନ୍ତର୍ଜାତିକ ସଂହତିକୁ "ଅଣ-ଶ୍ରେଣୀ" ସଂହତିଭାବେ ଦେଖାଯାଏ ଯାହା ଏକା ସମ୍ପୂର୍ଣ୍ଣ ଗୌଣ ଭୂମିକା ପାଳନ କରିବ ।

ଅଥଚ ଜୀବନର ଅଭିଜ୍ଞତାରୁ ଜଣାଯାଏ ଯେ ଉଭୟ ଆଭିମୁଖ୍ୟ ଭୁଲ । ଶାନ୍ତି ପାଇଁ ସଂଗ୍ରାମ ସାମାଜିକ ପ୍ରଗତି ନିମନ୍ତେ (ପରିଶେଷରେ ସମାଜବାଦ ନିମନ୍ତେ) ସଂଗ୍ରାମ ମଧ୍ୟରେ ରହିଥିବା ସଂପର୍କକୁ ଅଧିକ ଉତ୍ତମରୂପେ ବୁଝିଲେ ଆନ୍ତର୍ଜାତିକ ସଂହତିର ନୂତନ ଓ ପୁରାତନ ରୂପ ମଧ୍ୟରେ ଥିବା ସମ୍ପର୍କ ମଧ୍ୟ ଅଧିକ ଉତ୍ତମ ରୂପେ ବୁଝିହୁଏ । ଯେହେତୁ ଶାନ୍ତି ପାଇଁ ସଂଗ୍ରାମ ମଧ୍ୟ ବୁର୍ଜୁଆର ସମରବାଦୀ, ସର୍ବାଧିକ ପ୍ରତିକ୍ରିୟାଶୀଳ ଅଂଶ ବିରୋଧରେ ହୋଇଥାଏ, ଏବଂ ସେହି କାରଣରୁ, ଏହାର ମନୋପୋଲି-ବିରୋଧୀ ପ୍ରବଣତା ଥାଏ, ଅର୍ଥାତ ସମାଜବାଦୀ ପ୍ରବଣତା ରହିଥାଏ, ଏ ପ୍ରକାରର ସଂପର୍କ ଆନ୍ତର୍ଜାତିକ ସଂହତିର ସବୁ ରୂପଠାରେ ସମାନଭାବେ ଦେଖାଯାଏ ।

ଶାନ୍ତିକାମୀ ସକଳ ଶକ୍ତିଙ୍କର ଆନ୍ତର୍ଜାତିକ ସଂହତି ଆନ୍ଦୋଳନର ଏକ ଦୃଢ଼ ପ୍ରାଣକେନ୍ଦ୍ର ରହିବା ଆବଶ୍ୟକ ଯାହାକି ଆନ୍ଦୋଳନକୁ ସଂଗଠିତପୂର୍ଣ୍ଣ, ଶକ୍ତିଶାଳୀ ଓ ଆତ୍ମ-ବିଶ୍ୱାସ ସମ୍ପନ୍ନ କରିବାର ସାମର୍ଥ୍ୟ ରଖୁଥିବ ଏବଂ ତାହାକୁ ଏକ ଅଯୋଗ୍ୟ, ବିଭକ୍ତିତ ଓ ତୁଚ୍ଛା ଶାନ୍ତିବାଦୀ—ପାସିଫିଷ୍ଟ—ଆନ୍ଦୋଳନରେ ପରିଣତ ହେବାରୁ ରୋକି ପାରିବ । ଡେନମାର୍କ କମ୍ୟୁନିଷ୍ଟ ପାର୍ଟିର ଚେୟାରମ୍ୟାନ କୋରଗେନ ଜେନସେନ କହିବା ପ୍ରକାରେ,

"ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀର ସଂହତି ଓ କର୍ମକ୍ଷେତ୍ରର ଏକତା ତଥା ସମସ୍ତ ବୈପ୍ଳବିକ ଶକ୍ତିଙ୍କର ସହଯୋଗିତା, ଆଗଭଳି ଆଜି ମଧ୍ୟ ଆନ୍ତର୍ଜାତିକତାବାଦର ସାରମର୍ମ ହୋଇରହିଛି ।" (୧) ମାତ୍ର ଏହା ସ୍ମରଣ ରଖିବାକୁ ହେବ ଯେ ଆଜି ସବହାରାର ଆନ୍ତର୍ଜାତିକ ସହତି ନଡ଼ଆର ଶସ ଭଳି ହେବ ନାହିଁ, ହେବ ପାରମାଣବିକ ନିଉକ୍ଲିଅସ ସଦୃଶ ; ଅନ୍ୟ କଥାରେ ଏହା ଏପରି ଏକ ଗଠନବିନ୍ୟାସ ହେବ ଯେ ତାହା ଏକ ପକ୍ଷରେ ସ୍ୱତନ୍ତ୍ର ରହିବ ଏବଂ ଅନ୍ୟ ପକ୍ଷରେ, ସମଷ୍ଟିର ଅନ୍ୟ ଅଂଶମାନଙ୍କ ସହିତ ଅବିଚ୍ଛେଦ୍ୟଭାବେ ସଂଯୁକ୍ତ ରହିବ, ସେମାନଙ୍କ ସହିତ ଏକାକାର ହୋଇଯିବ ।

ସେଥିସକାଶେ, ଆନ୍ତର୍ଜାତିକ ସଂହତିର ନୂତନ ରୂପର ଯେଉଁ ଅସାଧାରଣ ଗୁରୁତ୍ୱ ରହିଛି ତାହା ଶ୍ରମିକ ଶ୍ରେଣୀର ସଂହତିକୁ ଆଦୌ ନିରର୍ଥକ ଓ ଅନାବଶ୍ୟକ କରିଦିଏ ନାହିଁ ; ଅଧିକନ୍ତୁ ଏହା (ଶ୍ରମିକ ଶ୍ରେଣୀର ସଂହତି) ବିନା ନୂତନ ରୂପ ଫଳପ୍ରଦ ହୋଇ ପାରିବ ନାହିଁ । ତାହା ସଙ୍ଗେ ସଙ୍ଗେ ଆନ୍ତର୍ଜାତିକ ସବହାରା ସଂହତି ଏବଂ ଅନ୍ୟ ରୂପର ଆନ୍ତର୍ଜାତିକତାବାଦ ମଧ୍ୟରେ ନିବିଡ଼, ସାଂଗଠନିକ ସମ୍ପର୍କ ରହିବା ଫଳରେ, ତାହା ଶ୍ରମିକ ଶ୍ରେଣୀକୁ ଏପରି କାର୍ଯ୍ୟ କରିବା ଲାଗି ବାଧ୍ୟ କରେ ଯେ ପ୍ରଗତି ଓ ଶାନ୍ତିର ଅନ୍ୟ ଶକ୍ତିମାନଙ୍କଠାରୁ ଏହା ଦୂରେଇ ଯାଇ ପାରିବ ନାହିଁ, ବିଚ୍ଛିନ୍ନ ହେବ ନାହିଁ । ଏହା ମଧ୍ୟ କୁହାଯାଇ ପାରିବ ଯେ ଶ୍ରମିକ ଶ୍ରେଣୀ ସଂହତିକୁ ଅଧିକ ଶକ୍ତିଶାଳୀ କରିବା ନିମିତ୍ତ ପ୍ରଚଳିତ ପ୍ରବୃତ୍ତିମାନଙ୍କ ମଧ୍ୟରେ ଅନ୍ୟତମ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ହେଲା ବ୍ୟାପକ ଆନ୍ତର୍ଜାତିକ ଶାନ୍ତି ଆନ୍ଦୋଳନକୁ ଆଗେଇନେବା ଓ ମଜବୁତ କରିବା ଲକ୍ଷ୍ୟରେ ପୃଥିବୀର ବିଭିନ୍ନ ଦେଶର ଶ୍ରମିକମାନଙ୍କର ସମ୍ମିଳିତ ଓ ଐକ୍ୟବଦ୍ଧ କାର୍ଯ୍ୟ । ଏ ପ୍ରସଙ୍ଗରେ ନରୱେ କମ୍ୟୁନିଷ୍ଟ ପାର୍ଟିର ପଲିଟିକାଲ ବ୍ୟୁରୋର ସଦସ୍ୟ ଗୁନାର ଓ୍ୱାହଲ ଯେଉଁ ନିର୍ଦ୍ଧାରଣରେ ପହଞ୍ଚିଛନ୍ତି ତାହା ପ୍ରଣିଧାନଯୋଗ୍ୟ । **ଓ୍ୱାର୍ଲ୍ଡ ମାର୍କସିଷ୍ଟ ରିଭିଉ** ଦ୍ୱାରା ଆୟୋଜିତ ଏକ ଗୋଲଟେବୁଲ ଆଲୋଚନା ଚକ୍ରରେ ସେ ଦର୍ଶାଇଥିଲେ ଯେ ଆଧୁନିକ ପୁଞ୍ଜିବାଦର ସାମାଜିକ ଓ ଅର୍ଥନୈତିକ ଅନ୍ତର୍ଦ୍ୱନ୍ଦ୍ୱକୁ ଅଧିକ ଉତ୍ତମ ରୂପେ ବୁଝିବା ନିମନ୍ତେ ଏବଂ ପୁଞ୍ଜିବାଦୀ ଶୋଷଣ ଓ ନିର୍ଯ୍ୟାତନ ବିରୋଧରେ ରାଜନୈତିକ ସଂଗ୍ରାମର ପ୍ରୟୋଜନୀୟତାକୁ ଉପଲବ୍ଧି କରିବା ସକାଶେ ଯୁଦ୍ଧ-ବିରୋଧୀ ଆନ୍ଦୋଳନ ଶ୍ରମିକ ଶ୍ରେଣୀକୁ ସାହାଯ୍ୟ କରୁଛି ।(୨)

---

(୧) **ଓ୍ୱାର୍ଲ୍ଡ ମାର୍କସିଷ୍ଟ ରିଭିଉ,** ଜୁଲାଇ ୧୯୮୭ ।

(୨) ,, ,, ,, ଅକ୍ଟୋବର ୧୯୮୭, ପୃଷ୍ଠା : ୫୯ ଦ୍ରଷ୍ଟବ୍ୟ ।

ଆନ୍ତର୍ଜାତିକ ସର୍ବହରା ସଂହତିର ନୂତନ ନମନୀୟ ରୂପ ବାହାର କରିବା ଓ ତାକୁ କର୍ମକ୍ଷେତ୍ରରେ ପରଖିବା ସମ୍ପର୍କିତ, ଉଦ୍ୟମ କମ୍ୟୁନିଷ୍ଟମାନେ ଆଜି ଜାରି ରଖିଛନ୍ତି । ଏହା ଦ୍ୱାରା ସେମାନେ କେବଳ ଯେ ଶ୍ରମିକ ଶ୍ରେଣୀର ଏକତାକୁ ମଜଭୁତ କରୁଛନ୍ତି ତାହା ନୁହେଁ, ସମଗ୍ର ବିଶ୍ୱର ସାମାଜିକ ପ୍ରଗତି ପକ୍ଷପାତୀ ଶକ୍ତିମାନଙ୍କର ଏକତାକୁ ମଧ୍ୟ ଦୃଢ଼ କରୁଛନ୍ତି ।

ଏ କାର୍ଯ୍ୟର ସଫଳ ରୂପାୟନ ଅନେକ ପରିମାଣରେ ନିର୍ଭର କରୁଛି, ନିଜର ମିତ୍ର ମାନଙ୍କ ସହିତ ନୂତନ ଉପାୟରେ ଆପଣାର ସମ୍ପର୍କ ସ୍ଥାପନ କରିବା ନିମନ୍ତେ କମ୍ୟୁନିଷ୍ଟ ପାର୍ଟିମାନଙ୍କର ଦକ୍ଷତା ଉପରେ । ସେମାନେ ଏହା କରିବେ ଅନ୍ୟମାନଙ୍କ ସହିତ ଆଲୋଚନା କରି ଏବଂ ସତ୍ୟଜ୍ଞାନ ଉପରେ ସେଇମାନଙ୍କର ଏକଚାଟିଆ ଅଧିକାର ରହିଛି ଏହା ମନେ ନକରି ନିଜ ମତକୁ ଦୃଢ଼ଭାବରେ ଉପସ୍ଥାପନ କରିବା ଜରିଆରେ : ମେଣ୍ଟରେ ଯୋଗ ଦେବା ନିମନ୍ତେ ସେମାନଙ୍କ ନେତୃତ୍ୱ ଅପରିହାର୍ଯ୍ୟ ହେବ ବୋଲି ଦାବୀ ନ ଉଠାଇ, ଆଉ ସଂଗ୍ରାମ କପରି ପରିଚାଳନା କରିବାକୁ ହୁଏ ସେ ବିଷୟରେ କେବଳ ଶିକ୍ଷାଦାନ କରିବାରେ ତୃପ୍ତ ନ ହୋଇ ଅନ୍ୟମାନଙ୍କଠାରୁ ମଧ୍ୟ ଶିକ୍ଷା ଗ୍ରହଣ କରି ।

ମେଣ୍ଟ ଗଠନର ନୀତି ସମ୍ବନ୍ଧରେ ଏଇ ନୂତନ ଲକ୍ଷଣଗୁଡ଼ିକୁ ଅନେକ କମ୍ୟୁନିଷ୍ଟ ପାର୍ଟି ନିଜ ନିଜ କାର୍ଯ୍ୟକ୍ରମରେ ରୂପଦାନ କରିଥିଲେ । ଦୃଷ୍ଟାନ୍ତ ସ୍ୱରୂପ, ପଶ୍ଚିମ ଜର୍ମାନୀ କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକ୍ରମରେ ଉଲ୍ଲେଖ କରାଯାଇଛି ଯେ "ମେଣ୍ଟରେ ଅଂଶ ଗ୍ରହଣ କରିବା ବେଳେ ଜର୍ମାନ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱ ପାଇଁ କୌଣସି ଦାବୀ ଉଠାଉ ନାହିଁ ।" ମିଳିତ ଆନ୍ଦୋଳନ ଓ ସକ୍ରିୟ କର୍ମପନ୍ଥା ଆରମ୍ଭ କରି ଏବଂ ଉତ୍ସାହର ସହିତ ଓ ଅବିଚଳ-ଭାବେ କାର୍ଯ୍ୟ କରି ଏହା ଅନ୍ୟମାନଙ୍କର ସମ୍ମାନ ଓ ମର୍ଯ୍ୟାଦା ଲାଭ କରିବାକୁ ଚାହେଁ । ଫରାସୀ କମ୍ୟୁନିଷ୍ଟମାନେ ବିଚାର କରନ୍ତି ଯେ "ମୁଖା ଖୋଲିଦେବା ପରିବର୍ତ୍ତେ ବୁଝାଇବା ବେଶି ଦରକାର, ସମାଲୋଚନା କରିବା ପରିବର୍ତ୍ତେ ପ୍ରସ୍ତାବ ବାଢ଼ିବା ବେଶି ଦରକାର, ଆଉ କେବଳମାତ୍ର ବୁଝାଇବା ଓ ପ୍ରସ୍ତାବ ବାଢ଼ିବା ନୁହେଁ, ଗଠନ କରିବା, ହାସଲ କରିବା, କାର୍ଯ୍ୟକାରୀ କରିବା ଓ ନିର୍ଦ୍ଦିଷ୍ଟ ରୂପ ପ୍ରଦାନ କରିବା—ସବୁ କ୍ଷେତ୍ରରେ କମ୍ୟୁନିଷ୍ଟମାନଙ୍କର ସକ୍ରିୟ କ୍ରିୟାକଳାପର ଏହା ହିଁ ହେଉଛି ନିୟମ ।"

**ଶ୍ରମିକ-ଶ୍ରେଣୀର ଆନ୍ତର୍ଜାତିକ ସଂହତିର ସମସ୍ତ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ସହ ଏହି ସଂହତିକୁ ଆହୁରି ବ୍ୟାପକ ପରିସରର ଆନ୍ତର୍ଜାତିକ ସଂହତିରେ "ପରିଣତ" କରିବାକୁ ହେବ ; ଅନ୍ୟାନ୍ୟ ରୂପର**

ଆନ୍ତର୍ଜାତିକତାବାଦ ନମନ୍ତେ ଏହାର ଦ୍ୱାର ଉନ୍ମୁକ୍ତ ରହିବ, ଅର୍ଥାତ୍ ଏହାକୁ ପୂର୍ବ ତୁଳନାରେ ବହୁ ଅଧିକ ନମନୀୟ ହେବାକୁ ପଡ଼ିବ ।

ମାତ୍ର ନୂତନ ଆଭିମୁଖ୍ୟର ଏହା ହେଉଛି ଗୋଟିଏ ମାତ୍ର ଦିଗ । ଅନ୍ୟ ଗୋଟିଏ ଦିଗ ହେଲା ଏଇ ଯେ ଆଜି ଶ୍ରମିକ-ଶ୍ରେଣୀର ଆନ୍ତର୍ଜାତିକତାବାଦ ଅନେକ ଦିଗରୁ ପୂର୍ବାପେକ୍ଷା ବହୁ ଅଧିକ ମଜଭୁତ ହେବା ଆବଶ୍ୟକ କାହିଁକି ?

ଏହାର ପ୍ରଥମ କାରଣ ହେଲା ଏଇ ଯେ ବୁର୍ଜୁଆ ତାହାର ଆନ୍ତର୍ଜାତିକ ସଂହତି ବୃଦ୍ଧି କରିଛି । ପୁଞ୍ଜିବାଦୀ ଉତ୍ପାଦନ ଜାତୀୟ ସୀମା ଅତିକ୍ରମ କରି ଯାଇଛି, ଏବଂ ଆଜି ତାହା ମଲ୍‌ଟିନାସନାଲ ଓ ଟ୍ରାନ୍‌ସନାସନାଲ କରର୍ପୋରେସନମାନଙ୍କରେ, ତଥା ୟୁରୋପୀୟ ଅର୍ଥନୈତିକ କମିଉନିଟି, 'ନାଟୋ' ପ୍ରଭୃତି ଭଳି ମେଣ୍ଟମାନଙ୍କର କେନ୍ଦ୍ରୀଭୂତ ହୋଇଛି । ଅତୀତରେ କୌଣସି ଏକ ଦେଶରେ ପୁଞ୍ଜିପତିମାନଙ୍କର ସ୍ୱାର୍ଥ ସର୍ବହରା ଦ୍ୱାରା ବାଧାପ୍ରାପ୍ତ ହେଲେ ଭିନ୍ନ ଭିନ୍ନ ଦେଶର ପୁଞ୍ଜିପତିମାନେ ସେମାନଙ୍କୁ ସାହାଯ୍ୟ କରୁଥିଲେ । ଅତୀତରେ ସୁଦ୍ଧା ସେମାନଙ୍କର ଶ୍ରେଣୀ ପ୍ରବୃତ୍ତିର କୌଣସି ସୀମାସରହଦ ନଥିଲା । ମାତ୍ର ସେମାନଙ୍କର ଆନ୍ତର୍ଜାତିକ ଗୋଷ୍ଠୀ ଗୋପନ ଚରିତ୍ର ବିଶିଷ୍ଟ ଥିଲା ଏବଂ ଯଦି କୌଣସି ଦେଶର ଶ୍ରେଣୀ ସଂଗ୍ରାମ ଖୁବ୍ ଭୟାନକ ହୋଇ ଉଠୁଥିଲା, ଯାହା ସାମଗ୍ରିକଭାବରେ ବିଶ୍ୱ ବୁର୍ଜୁଆର ସ୍ଥିତିକୁ ଦୁର୍ବଳ କରି ଦେବାର ସମ୍ଭାବନା ଥିଲା, ସେତିକବେଳେ କେବଳ ଏହା ମଇଦାନକୁ ଆସୁଥିଲା ।

ବିଭିନ୍ନ ଦେଶରେ ଶ୍ରମିକ ଶ୍ରେଣୀକୁ ଅଧିକାଂଶ ସ୍ଥଳରେ "ଆପଣା ଦେଶର" ବୁର୍ଜୁଆମାନେ ଶୋଷଣ କରୁଥିଲେ ଯେଉଁମାନେ ଥିଲେ ଜାତୀୟ ପୁଞ୍ଜିର ମାଲିକ । ଆଜି ଟ୍ରାନ୍‌ସନାସନାଲ ପୁଞ୍ଜି ଦ୍ୱାରା ବାରମ୍ବାର ଶୋଷଣ ଚାଲିଛି । ଉଦାହରଣ ସ୍ୱରୂପ, ଜେନେରାଲ ମୋଟରସ୍ କର୍ପୋରେସନ ଆମେରିକା ଯୁକ୍ତରାଷ୍ଟ୍ର, ପଶ୍ଚିମ ଜର୍ମାନୀ, ଗ୍ରେଟ ବ୍ରିଟେନ, ଆରଜେଣ୍ଟିନା, ବ୍ରାଜିଲ ଓ ଅନ୍ୟାନ୍ୟ ଦେଶର ଶ୍ରମିକମାନଙ୍କୁ ଶୋଷଣ କରୁଛି । ଆଉ ଟ୍ରାନ୍‌ସନାସନାଲ ପୁଞ୍ଜିର ଏହି ମିଳିତ ସାମ୍ମୁଖ୍ୟକୁ ବିରୋଧ କରୁଛନ୍ତି ଶ୍ରମିକ ଶ୍ରେଣୀର ସାମାନ୍ୟ ଏକତାବଦ୍ଧ, କାର୍ଯ୍ୟତଃ ବିଭାଜିତ ବାହିନୀମାନେ । କମ୍ୟୁନିଷ୍ଟ ପାର୍ଟିମାନେ କହିବା ଭଳି ଏ ପ୍ରକାରର ବିରୋଧ ଶ୍ରମିକ ଶ୍ରେଣୀର ସ୍ୱାର୍ଥ ବିଚାରରୁ ଅର୍ଥହୀନ । ୧୯୮୬ ମସିହାରେ ପ୍ରାଗ୍‌ଠାରେ ଅନୁଷ୍ଠିତ ଏକ ଗୋଲଟେବୁଲ ଆଲୋଚନାରେ ୨୩ଟି କମ୍ୟୁନିଷ୍ଟ ପାର୍ଟିର ପ୍ରତିନିଧିମାନେ ଜଣାଇଥିଲେ ଯେ "କେବଳ ମାତ୍ର ଜାତୀୟ ପ୍ରୟାସ ଦ୍ୱାରା ଟ୍ରାନ୍‌ସନାସନାଲମାନଙ୍କୁ ଫଳପ୍ରଦ ପ୍ରତିରୋଧ ନିଶ୍ଚିତ କରିବା

ବର୍ତ୍ତମାନ ଅବସ୍ଥାରେ ଯେ ଆଦୌ ସମ୍ଭବପର ନୁହେଁ, ଏଥିରେ ସନ୍ଦେହର ଅବକାଶ ନାହିଁ ।"(୧) ପ୍ରକୃତ ପକ୍ଷେ ଟ୍ରାନ୍‌ସନାସନାଲ ବିରୋଧରେ ସଂଗ୍ରାମ କେବଳମାତ୍ର ଜାତୀୟ ପ୍ରୟାସ ଦ୍ୱାରା ସଫଳକାମ ହୋଇ ପାରିବ ନାହିଁ—ଏଇ ଏକାନ୍ତ ନିର୍ଦ୍ଦିଷ୍ଟ ଓ ସୁସ୍ପଷ୍ଟ ନିର୍ଦ୍ଧାରଣରେ କମ୍ୟୁନିଷ୍ଟମାନେ ପହଞ୍ଚିଥିଲେ । ପ୍ରାଗ ବୈଠକରେ ଉଲ୍ଲିଖିତ ହେଲା ଯେ **"ଏଇ କାରଣ ଯୋଗୁଁ କମ୍ୟୁନିଷ୍ଟ ପାର୍ଟିମାନେ ବିଶ୍ୱାସ କରନ୍ତି ଯେ ସେମାନଙ୍କର ମୌଳିକ କର୍ତ୍ତବ୍ୟ ହେଉଛି ପ୍ରତ୍ୟେକ ସ୍ତରରେ ଶ୍ରମିକ ଶ୍ରେଣୀର ସଙ୍ଗଠନକୁ ବଢ଼େଇବା ଏବଂ ତାହାକୁ ଏପରି ଏକ ସ୍ତରକୁ ନେଇଯିବା ଯେଉଁଠି ତାହା ପୁଞ୍ଜିବାଦୀ ଉତ୍ପାଦନ ଓ ଖୋଦ ପୁଞ୍ଜିର ଆନ୍ତର୍ଜାତୀୟକରଣର ସ୍ତର ସମ ହେବ ।"** (୨) ଅନ୍ୟ କଥାରେ, "ଟ୍ରାନସନାସନାଲ ଫଣ୍ଟ"(୩)କୁ ଆନ୍ତର୍ଜାତିକ ଶ୍ରମିକଶ୍ରେଣୀ" ବିରୋଧ କରିବ । ଅତଏବ ଯେଉଁ ପରିବର୍ତ୍ତନ ହୋଇଛି ତାହା ଏଇଯେ ଯେ ବହୁ ଦଶନ୍ଧି ପୂର୍ବେ ଯେତେବେଳେ କି ପୁଞ୍ଜିବାଦୀ ଉତ୍ପାଦନ ଜାତୀୟ ସୀମା ଭିତରେ ଆବଦ୍ଧ ଥିଲା ସେତେବେଳେ ଆନ୍ତର୍ଜାତିକ ସହତ ଥିଲା ଏକାନ୍ତ କାମ୍ୟ, ଆଜ ତାହା ହୋଇଛି ଅପରିହାର୍ଯ୍ୟ । ଏହା ବିନା କୌଣସି ଫଳପ୍ରଦ ସଂଗ୍ରାମ ଏକେବାରେ ଅସମ୍ଭବ ।

ଏହି କାରଣରୁ ମନୋପୋଲି-ବିରୋଧୀ ସଂଗ୍ରାମରେ ଶ୍ରମିକ ଶ୍ରେଣୀର ଆନ୍ତର୍ଜାତିକତାବାଦ ଆଜ ପୂର୍ବାପେକ୍ଷା ଅଧିକ ମଜଭୂତ ହେବା ଆବଶ୍ୟକ । ଏହି କାରଣରୁ **ଇସ୍ତାହାର**ର ସେଇ ପ୍ରସିଦ୍ଧ ସ୍ଲୋଗାନ **"ସବୁ ଦେଶର ଶ୍ରମଜୀବୀ, ଏକଜୁଟ ହୁଅ"** ଅତୀତର ଯେକୌଣସି ସମୟ ତୁଳନାରେ ଆଜ ଆହୁରି ଅଧିକ ଜୀବନ୍ତ ।

**ଇସ୍ତାହାର**ରେ ଉଦ୍‌ଘୋଷିତ ଏହି ଏକତାର ଆବଶ୍ୟକତା ନିମନ୍ତେ ପୁଞ୍ଜିବାଦୀ ଦେଶସମୂହର ଶ୍ରମିକମାନେ ଅଧିକରୁ ଅଧିକ ସଚେତନ ହେଉଛନ୍ତି । ଟ୍ରାନସନାସନାଲ-ମାନଙ୍କ ବିରୋଧରେ ଚାଲିଥିବା ସଂଗ୍ରାମରେ ଜାତୀୟ ଓ ଆନ୍ତର୍ଜାତିକ କର୍ତ୍ତବ୍ୟର ପାରସ୍ପରିକ ସମ୍ପର୍କ ପ୍ରଶ୍ନର ମୌଳିକ ତାତ୍ତ୍ୱିକ ସମାଧାନ ସହିତ କେବଳ ଆଜି କମ୍ୟୁନିଷ୍ଟମାନେ ସମ୍ପୃକ୍ତ

---

(୧) **ଓାର୍ଲ୍ଡ ମାର୍କସିଷ୍ଟ ରିଭିଉ**, ଅପ୍ରେଲ ୧୯୮୨, ପୃ: ୮୦ ।

(୨) " " " ଅପ୍ରେଲ, ୧୯୮୨ ପୃ: ୭୯ ।

(୩) " " " ଅପ୍ରେଲ ୧୯୮୨, ପୃ: ୭୯ ।

ନୁହନ୍ତି । ଆନ୍ତର୍ଜାତିକ କ୍ଷେତ୍ରରେ ଟ୍ରାନ୍ସନାସନାଲ ବୃର୍ଜୁଆମାନଙ୍କ ବିରୋଧରେ ସଂଗ୍ରାମରେ ଶ୍ରମିକ ଶ୍ରେଣୀର ନିର୍ଦ୍ଦିଷ୍ଟ ପ୍ରୟାସ ତଥା କର୍ମକ୍ଷେତ୍ରରେ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଅନୁସରଣ ପାଇଁ ସେମାନେ ଆଗ୍ରହୀ ।

ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀର ଏକତାକୁ ଅଧିକ ମଜଭୁତ କରିବାର ଉଦ୍ଦେଶ୍ୟ ରଖି କମ୍ୟୁନିଷ୍ଟ ପାର୍ଟିମାନେ ଟ୍ରେଡ ୟୁନିଅନ କ୍ରିୟାକଳାପର ଆନ୍ତର୍ଜାତୀୟକରଣକୁ ଉତ୍ସାହିତ କରିବା ନିମନ୍ତେ ଯଥାସମ୍ଭବ ଉଦ୍ୟମ କରୁଛନ୍ତି । ଟ୍ରାନ୍ସନାସନାଲ କର୍ପୋ-ରେସନଗୁଡ଼ିକ ସଂକ୍ରାନ୍ତ ଜାତିସଂଘର କମିଶନକୁ ଟ୍ରେଡ୍ ୟୁନିଅନସମୂହ ବିଶ୍ୱ ଫେଡ଼ରେସନ ଯେଉଁ ଆବେଦନ ପତ୍ର ଦେଇଛି ତାହାକୁ ସେମାନେ ଦୃଢ଼ ସମର୍ଥନ ଜଣାଇଛନ୍ତି । ନିଯୁକ୍ତି ଓ କାର୍ଯ୍ୟର ପରିବେଶ ସଂକ୍ରାନ୍ତ ସବୁ ବିଷୟରେ ଗୋଟିଏ ବା ଏକାଧିକ ଦେଶ କ୍ଷେତ୍ରରେ ଆଲାପଆଲୋଚନା ଚଳାଇବା ନିମନ୍ତେ ଟ୍ରେଡ ୟୁନିଅନମାନଙ୍କର ଅଧିକାର ସ୍ୱୀକାର କରିବାକୁ ତହିଁରେ ଦାବୀ କରାଯାଇଛି । କମ୍ୟୁନିଷ୍ଟମାନେ ଆହୁରି ମଧ୍ୟ ଦାବୀ କରନ୍ତି ଯେ ଟ୍ରାନସନାସନାଲ କର୍ପୋରେସନର ପରିସର ଭିତରେ ଆନ୍ତର୍ଜାତିକ କ୍ରିୟାନୁଷ୍ଠାନ କମିଟିମାନ ଗଠିତ ହେଉ ଯାହା ବିଭିନ୍ନ ଦେଶରେ ଟ୍ରେଡୟୁନିଅନମାନଙ୍କର ଆଭିମୁଖ୍ୟ ବ୍ୟାପାରରେ ତଥା ଏକା ଟ୍ରାନ୍ସନାସନାଲ ଅନ୍ତର୍ଭୁକ୍ତ କାରଖାନାମାନଙ୍କରେ ନିଯୁକ୍ତ ଶ୍ରମିକମାନଙ୍କର ସମ୍ମିଳିତ କାର୍ଯ୍ୟ ସମ୍ପର୍କରେ ସମନ୍ୱୟ ସାଧନ କରିବ ।(୧)

ଏସିଆ ଓ ଆଫ୍ରିକାର ଲକ୍ଷଣଗୁଡ଼ିକୁ ବିଗ୍ଭର କରି ଏସିଆ ଓ ଆଫ୍ରିକାର କମ୍ୟୁନିଷ୍ଟ ପାର୍ଟିମାନେ ତଥା ଅନ୍ୟାନ୍ୟ ପ୍ରଗତିଶୀଳ ଶକ୍ତିବର୍ଗ ଦେଖୁଛନ୍ତି ଯେ ଟ୍ରାନ୍ସ-ନାସନାଲମାନଙ୍କୁ ବିରୋଧ କରିବାର ପ୍ରଧାନ ପଥ ହେଲା ଏକ ନୂତନ ଆନ୍ତର୍ଜାତିକ ଅର୍ଥନୈତିକ ବ୍ୟବସ୍ଥା ନିମନ୍ତେ ଉନ୍ନତ ଓ ବିକାଶଶୀଳ ଦେଶମାନଙ୍କର ଶ୍ରମଜୀବୀ ଜନତାର ମିଳିତ ସଂଗ୍ରାମ ।

ଲାଟିନ ଆମେରିକା, କାରିବିୟା, ଫିଲିପାଇନସରେ ତଥା ଅନ୍ୟାନ୍ୟ ଅଞ୍ଚଳରେ ଯେଉଁଠି ମାର୍କିନ ଟ୍ରାନ୍ସନାସନାଲମାନଙ୍କର ପ୍ରାଧାନ୍ୟ ବିଶେଷଭାବେ ଦୃଢ଼, ସେ ସବୁ ସ୍ଥାନର କମ୍ୟୁନିଷ୍ଟ ପାର୍ଟିମାନେ ଏହି ବିଶ୍ୱାସ ପୋଷଣ କରନ୍ତି ଯେ ସେମାନଙ୍କ ଦେଶ-ମାନଙ୍କର ସାମାଜିକ ମୁକ୍ତି ମାର୍କିନ ସାମ୍ରାଜ୍ୟବାଦ ଉପରେ ସେମାନଙ୍କ ନିର୍ଭରଶୀଳତାର ବିଲୋପ ସାଧନ ସହିତ ଅବିଚ୍ଛେଦ୍ୟଭାବେ ସଂଯୁକ୍ତ ।

---

(୧) **ଓାର୍ଲ୍ଡ ମାର୍କସିଷ୍ଟ ରିଭିଉ**, ଜୁଲାଇ ୧୯୮୭, ପୃ: ୧୭, ଦ୍ରଷ୍ଟବ୍ୟ ।

କମ୍ୟୁନିଷ୍ଟ ପାର୍ଟିମାନେ ଏ ବିଷୟରେ ଅବଗତ ଅଛନ୍ତି ଯେ ଯେଉଁ ପୁଞ୍ଜି ସମଗ୍ର ବିଶ୍ୱ ବ୍ୟାପୀ ସ୍ତରରେ ଏକତାବଦ୍ଧ ହୋଇଛି ତାହା ସହିତ ସଂଗ୍ରାମ କେବଳ ଏକ ଅର୍ଥନୈତିକ ସଂଗ୍ରାମ ନୁହେଁ, ରାଜନୈତିକ ସଂଗ୍ରାମ ମଧ୍ୟ ।

ଏଣୁ କମ୍ୟୁନିଷ୍ଟ ପାର୍ଟିମାନେ ସେମାନଙ୍କର ପୁଞ୍ଜି-ବିରୋଧୀ ସଂଗ୍ରାମରେ ଆପଣାର ଅର୍ଥନୈତିକ କାର୍ଯ୍ୟକ୍ରମକୁ ରାଜନୈତିକ ସମର୍ଥନ ଦିଆଯିବାର ପ୍ରଶ୍ନ ପ୍ରତି ବିଶେଷ ନଜର ଦିଅନ୍ତି ଏବଂ ମଲଟିନାସନାଲ ପୁଞ୍ଜି ବଳରେ ଅର୍ଥନୈତିକ ଅଗ୍ରଗତି କାଳରେ କେଉଁ ରାଜନୈତିକ ରୂପ ରକ୍ଷାକବଚରୂପେ କାମ କରିପାରେ, ତାହା ମଧ୍ୟ ସେମାନେ ବିଚାର କରନ୍ତି । କମ୍ୟୁନିଷ୍ଟମାନଙ୍କ ନିମନ୍ତେ ଏସବୁ ହେଲା ନୂତନ ପ୍ରଶ୍ନ, ଏବଂ ସେଇ କାରଣରୁ ଏଗୁଡ଼ିକର ସମାଧାନ ସମ୍ପର୍କରେ ଭିନ୍ନ ଭିନ୍ନ ଦୃଷ୍ଟିଭଙ୍ଗୀ ରହିବା ଅତ୍ୟନ୍ତ ସ୍ୱାଭାବିକ ।

କେତେକ ତତ୍ତ୍ୱବିଦ୍ (ଉଦାହରଣ ସ୍ୱରୂପ ଇ. ଇ. ସି. ଦେଶମାନଙ୍କରେ) ବିଶ୍ୱାସ କରନ୍ତି ଯେ ୟୁରୋପୀୟ ପୁଞ୍ଜିବାଦୀ ଦେଶମାନଙ୍କର ବୁର୍ଜୁଆଙ୍କ ମଧ୍ୟରେ କଠୋର ଅର୍ଥନୈତିକ, ରାଜନୈତିକ ଓ ସାମରିକ-ରଣନୈତିକ ପରସ୍ପର ନିର୍ଭରଶୀଳତା ରହିଥିବା ହେତୁ ସମାଜବାଦ ଦିଗକୁ ଅଗ୍ରଗତି ହେବ ନାହିଁ । ପୁଣି ସେହି ଦେଶମାନଙ୍କ ମଧ୍ୟରୁ ଗୋଟିଏ ଦେଶରେ ସମାଜବାଦର ବିଜୟ ସମ୍ଭବପର ନୁହେଁ । ସେଥି ନିମିତ୍ତ, କେତେଗୁଡ଼ିଏ ପଶ୍ଚିମ ୟୁରୋପୀୟ ଦେଶରେ ସମାଜବାଦର ଊଣା ଅଧିକେ ସମକାଳୀନ ବିଜୟ ଘଟିବ ଏଇ ଆଶା ରଖି ପ୍ରଗତିଶୀଳ ଶକ୍ତିମାନଙ୍କର ସର୍ବ-ୟୁରୋପୀୟ କ୍ରିୟାନୁଷ୍ଠାନ ଉଦ୍ଦେଶ୍ୟରେ କମ୍ୟୁନିଷ୍ଟମାନେ ନିଜର ସମସ୍ତ ଶକ୍ତି ବିନିଯୋଗ କରିବା ଉଚିତ ।
ଏ ଆଭିମୁଖ୍ୟର ଗଠନମୂଳକ ଦିଗଟି ହେଲା, ଜାତୀୟ ବିଚ୍ଛିନ୍ନତା ପ୍ରତି ସମାଲୋଚନା-ମୂଳକ ଦୃଷ୍ଟିଭଙ୍ଗୀ ଏବଂ କମ୍ୟୁନିଷ୍ଟମାନଙ୍କର ଓ ସେମାନଙ୍କର ମିତ୍ରମାନଙ୍କ ଦ୍ୱାରା ଆନ୍ତର୍ଜାତିକ ସ୍ତରରେ ସମ୍ମିଳିତ ପ୍ରୟାସର ସର୍ବାତ୍ମକ ବୃଦ୍ଧି ପାଇଁ ଆଗ୍ରହ । ତେବେ ଏ ଆଭିମୁଖ୍ୟ କେତେକ ପରିମାଣରେ ସମରୂଳ ଅଟେ, ଆଉ ଆନ୍ତର୍ଜାତିକ ପ୍ରଚେଷ୍ଟାର ତାତ୍ପର୍ଯ୍ୟକୁ ଅତିରଞ୍ଜିତ କରାଯାଇଛି ; ଅବିଚଳଭାବରେ ଯଦି ଏଇ ଦୃଷ୍ଟିଭଙ୍ଗୀ ଗ୍ରହଣ କରାଯାଏ ତାହାହେଲେ ତା'ର ପରିଣାମସ୍ୱରୂପ, ଜାତୀୟ ସ୍ତରରେ ବୈପ୍ଳବିକ ଉଦ୍ୟମ-ଶୀଳତା ଶିଥିଳ ହୋଇଯିବ, ଆଉ ସମ୍ମିଳିତ କ୍ରିୟାନୁଷ୍ଠାନ ନିମନ୍ତେ ଅପେକ୍ଷାରତ ରହିବାର ରଣନୀତିରେ ତାହା ପରିଣତ ହୋଇଯିବ ।

ଏହି ହେତୁ ଏକ ବିପରୀତ ଆଭିମୁଖ୍ୟ ବାହାର କରାଯାଇଛି ଯେ ଜାତୀୟ କର୍ତ୍ତବ୍ୟ ଓ ସମ୍ଭାବନା ଉପରେ ଅଧିକ ଗୁରୁତ୍ୱ ଦିଆଯିବ, ଆଉ ତାହା ସଙ୍ଗେ ସଙ୍ଗେ ବିଶ୍ୱର

ଘଟଣାବଳୀ ସହିତ ସେମାନଙ୍କର ନ୍ୟୂନତମ ସଂଯୋଗ ରକ୍ଷା କରାହେବ। ଅବଶ୍ୟ ଏଭଳି ଏକ ଆଭିମୁଖ୍ୟ ବଳିଷ୍ଠ ଓ ନିର୍ଦ୍ଦିଷ୍ଟ କ୍ରିୟାନୁଷ୍ଠାନ ଉପରେ ଆଧାରିତ, ଆଉ ଏହା ହିଁ ହେଉଛି ତାର ସୁବିଧା। ମାତ୍ର ପରିତାପର କଥା ଯେ, ନିକଟର ଘଟଣାବଳୀରୁ ଜଣାଗଲି ଭଳି, ଏ କ୍ରିୟାନୁଷ୍ଠାନ ବିଶେଷ ଫଳପ୍ରସୂ ହୋଇ ନାହିଁ। କେତେକ ଦେଶର ବୃହତ୍ ମନୋପୋଲି ପୁଞ୍ଜି ଉପରେ (ପୁଞ୍ଜିର ଆନ୍ତର୍ଜାତିକ ସମ୍ପର୍କ ଓ ସମ୍ଭାବନା ବିଷୟ ବିଚାର ନ କରି) ଚାପ ସୃଷ୍ଟି ପାଇଁ ବାମପନ୍ଥୀ ଶକ୍ତିମାନଙ୍କର ପ୍ରଚେଷ୍ଟା ଆଉ ସେଥି ନିମିତ୍ତ ସଂସଦୀୟ, ପୌର ଓ ଏପରିକି ସରକାରୀ ପ୍ରଭାବର ପ୍ରୟୋଗ ମଧ୍ୟ ଫଳପ୍ରଦ ହୋଇ ନାହିଁ। ତା'ର କାରଣ ହେଲା ଏଇ ଯେ ପୁଞ୍ଜି ସହଜରେ ଅନ୍ୟ ଦେଶକୁ ପଳେଇ ଯାଇ ଜାତୀୟ-କରଣ ଓ ଗଣତାନ୍ତ୍ରିକ ନିୟନ୍ତ୍ରଣରୁ ସୁବିଧାରେ ଖସି ଯାଇପାରେ। ଅନ୍ୟ ପକ୍ଷରେ ତାହାର ଜବାବୀ ପଦକ୍ଷେପ ସ୍ୱରୂପ ଅର୍ଥନୈତିକ ଓ ରାଜନୈତିକ ବ୍ୟବସ୍ଥା ଯାହାର ସମନ୍ୱୟ ବିଶ୍ୱବ୍ୟାପୀ ସ୍ତରରେ ହୁଏ, ତାହା ସମ୍ପୃକ୍ତ ଦେଶକୁ ତଥା ତା'ର ବାମପନ୍ଥୀ ଶକ୍ତିମାନଙ୍କୁ ବିପଜ୍ଜନକ ଅବସ୍ଥାରେ ପକେଇ ଦେଇପାରେ।

ମାତ୍ର ସବୁକାଳ ଭଳି ଜୀବନର ଅଭିଜ୍ଞତା ହିଁ ତତ୍ତ୍ୱଗୁଡ଼ିକୁ ସଂଶୋଧନ କରେ। ଯେଉଁମାନେ ଆନ୍ତର୍ଜାତିକ ଉପାଦାନ ପ୍ରତି ଗୁରୁତ୍ୱ ଆରୋପ କରନ୍ତି ସେମାନେ ବାସ୍ତବ କାର୍ଯ୍ୟକ୍ଷେତ୍ରରେ ଦେଖିଛନ୍ତି ଯେ ଗୋଟିଏ ଦେଶରେ ଶକ୍ତିମାନଙ୍କର ପାରସ୍ପରିକ ସଂପର୍କ ବଦଳିଗଲେ ସମଗ୍ର ୟୁରୋପରେ ସେଇ ଶକ୍ତିମାନଙ୍କର ପାରସ୍ପରିକ ସମ୍ପର୍କ ଉପରେ ତାହାର ପ୍ରଭାବ ପଡ଼ିବ। ଜାତୀୟ ପ୍ରଚେଷ୍ଟାର ପ୍ରବକ୍ତାମାନେ ଏହା ଅନୁଭବ କରିବା ଆରମ୍ଭ କଲେଣି ଯେ ୟୁରୋପୀୟ ଅର୍ଥନୈତିକ ଗୋଷ୍ଠୀ (ଇ. ଇ. ସି.)ର ଛାଞ୍ଚ ଭିତରେ ଐକ୍ୟବଦ୍ଧ ହୋଇଥିବା ପୁଞ୍ଜି ହେଉଛି ଏକ ବାସ୍ତବତା, ପୁଣି ଇଇସି ଓ ୟୁରୋପୀୟ ପାର୍ଲାମେଣ୍ଟ ଏମାନେ ବେଶ ବଡ଼ ଶକ୍ତି। ତେଣୁ ଏକ ଫଳପ୍ରଦ ସଂଗ୍ରାମ ଚଳାଇବା ନିମନ୍ତେ ଏ ବାସ୍ତବତାକୁ ଆଖି ଆଗରେ ରଖିବାକୁ ହେବ। କର୍ମକ୍ଷେତ୍ରରେ ସଂଗ୍ରାମୀ ସାଙ୍ଗକୁ କମରେଡସୁଲଭ ଆଲୋଚନା ହେଲେ ତାହା ପୃଥକ ପୃଥକ ବିଚାରକୁ ନିକଟତର କରେ। ୧୯୮୫ ମସିହାରେ ପାରିସଠାରେ କମ୍ୟୁନିଷ୍ଟମାନଙ୍କର ଯେଉଁ ବୈଠକ ହୋଇଥିଲି, ସେଠାରେ ଏହା ବିଶେଷଭାବେ ସ୍ପଷ୍ଟ ହୋଇଗଲା। ଏଭଳି ଏକ ବୈଠକ ଯେ ବସି ପାରିଲା ଓ ସେଥିରେ ଅଧିକାଂଶ ପଶ୍ଚିମ ୟୁରୋପୀୟ କମ୍ୟୁନିଷ୍ଟ ପାର୍ଟିମାନେ ଯୋଗଦାନ କଲେ, ଅନୁଭୂତ ବିନିମୟ କଲେ ତଥା ନିଜ ନିଜର ମତଗତ ଅବସ୍ଥାନର ସନ୍ନିକଟତା ପ୍ରକାଶ କଲେ—ଏସବୁରୁ ଏକ ଗୁରୁତ୍ୱପୂର୍ଣ୍ଣ ଶୁଭଲକ୍ଷଣ ପ୍ରକାଶ ପାଇଲା ଯେ

ଆନ୍ତର୍ଜାତିକ ସଂଯୋଗ ରକ୍ଷା ନିମନ୍ତେ ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ କ୍ରିୟାନୁଷ୍ଠାନ ନିମନ୍ତେ କମ୍ୟୁନିଷ୍ଟମାନଙ୍କର ଆଗ୍ରହ ବୃଦ୍ଧି ପାଇଛି । ଆନ୍ତର୍ଜାତିକ କର୍ତ୍ତବ୍ୟଗୁଡ଼ିକର ମହତ୍ତ୍ୱକୁ ସେମାନେ କିପରି ବୁଝୁଛନ୍ତି, ଏବଂ ପ୍ରତ୍ୟେକ ପାର୍ଟିର କ୍ରିୟାକଳାପରେ ଉକ୍ତ କର୍ତ୍ତବ୍ୟଗୁଡ଼ିକର ଯେଉଁ ନିର୍ଦ୍ଦିଷ୍ଟ ଜାତୀୟ ଲକ୍ଷଣ ରହିଛି ସେଥିପ୍ରତି ସେମାନଙ୍କର କିପରି ସମ୍ମାନବୋଧ ରହିଛି, ତାହାର ପ୍ରମାଣ ଏଇଥିରୁ ମିଳିଯାଏ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି ସର୍ବଶେଷ ସ୍ତର ଜଣ ଏବଂ ଆଜି ଶ୍ରମିକ ଶ୍ରେଣୀ କେଉଁ ପ୍ରକାରର ଆନ୍ତର୍ଜାତିକତାବାଦ ଅନୁସରଣ କରିବ ? ତାହା ସମ୍ପ୍ରସାରିତ ହେବ ନା ଦୃଢ଼ତର ହେବ ? ଆମର ବିଶ୍ୱାସ ଯେ **ଏହା ଦୁଇଟାଯାକ ହେବ** । ଏହା ହେବ ଅତିଶୟ ନମନୀୟ ଏବଂ ଆନ୍ତର୍ଜାତିକ ସଂହତିର ("ଏକତାର ମୂଳକେନ୍ଦ୍ର") ଅନ୍ୟାନ୍ୟ ବହୁବିଧ ରୂପ ସହିତ ଯୋଗାଯୋଗ ବାଟରେ ଏହା ଅଗ୍ରସର ହେବ । ମାତ୍ର ଏ ସମସ୍ତ ବହୁବିଧ ରୂପ ଶୃଙ୍ଖଳାଶୂନ୍ୟ ଏକୀକରଣରେ—ଏକ ଖେଚୁଡ଼ିରେ ପରିଣତ ହେବାକୁ ବାଧା ଦେବା ନିମନ୍ତେ ଏବଂ ଜୀବନ୍ତ ଏକତା ପ୍ରତିଷ୍ଠା ବାଟରେ ସେମାନଙ୍କୁ ସାହାଯ୍ୟ କରିବା ନିମନ୍ତେ, ଉକ୍ତ ଏକତାର ମୂଳ କେନ୍ଦ୍ରରେ କେତେଗୁଡ଼ିଏ ଗୁଣ ରହିବା ଆବଶ୍ୟକ । ତାହା ହେଲା ଅଧିକତର ନମନୀୟତା ଓ ବୃହତ୍ତର ଆକର୍ଷଣ ଶକ୍ତି । ଏଇ ଦୁଇ ବିପରୀତ ପ୍ରବୃତ୍ତିକୁ—ନମନୀୟତା ଓ ଶକ୍ତିକୁ—ଏକା ମଞ୍ଚରେ ଐକ୍ୟବଦ୍ଧ କରିବା ଲାଗି କମ୍ୟୁନିଷ୍ଟମାନେ ଆଜି ଚେଷ୍ଟିତ ଅଛନ୍ତି । ଆନ୍ତର୍ଜାତିକ ସଂହତିର ତତ୍ତ୍ୱ ଓ ତା'ର ପ୍ରୟୋଗକୁ ଅଧିକ ବିକଶିତ ଓ ସମୃଦ୍ଧ କରିବା ପାଇଁ ସେମାନେ ଏହା କରୁଛନ୍ତି ।

ଆନ୍ତର୍ଜାତିକ ସଂହତିକୁ ଶକ୍ତିଶାଳୀ କରିବାର ବସ୍ତୁନିଷ୍ଠ ପ୍ରୟୋଜନୀୟତା ତଥା କ୍ରିୟାକର୍ମର ନୂତନ ଆନ୍ତର୍ଜାତିକ ରୂପର ବିକାଶ ହିଁ କମ୍ୟୁନିଷ୍ଟ ଆନ୍ଦୋଳନର ଏକତାକୁ ଶକ୍ତିଶାଳୀ କରିବାର ପ୍ରୟୋଜନୀୟତାକୁ ଅଧିକ ଗଭୀରଭାବେ ହୃଦୟଙ୍ଗମ କରିବାରେ କମ୍ୟୁନିଷ୍ଟମାନଙ୍କୁ ସାହାଯ୍ୟ କରିଛି । କିଛିକାଳ ପୂର୍ବେ କେତେଗୁଡ଼ିଏ କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ କେବଳ ଦ୍ୱିପାକ୍ଷିକ ଯୋଗାଯୋଗ ହିଁ ଥିଲା ସଂଯୋଗର ଉତ୍ତମ ରୂପ ଏବଂ ବସ୍ତୁତଃ ସର୍ବୋତ୍କୃଷ୍ଟ, କାରଣ ସେମାନେ ବିଚାରୁଥିଲେ ଯେ ପାର୍ଟିମାନଙ୍କର ପ୍ରୟୋଜନୀୟତା ଓ ସ୍ୱାଧୀନତାକୁ ଏହା ସଂପୂର୍ଣ୍ଣ ପୂରଣ କରୁଛି । ବହୁପକ୍ଷୀୟ ଆନ୍ତର୍ଜାତିକ ଯୋଗାଯୋଗର ବୃଦ୍ଧି ସପକ୍ଷରେ ଏକ ସୁସ୍ପଷ୍ଟ ପ୍ରବୃତ୍ତି ଲକ୍ଷ୍ୟ କରାଯାଉଛି । ଏସୀୟ, ଲାଟିନ ଆମେରିକୀୟ ଓ ପଶ୍ଚିମ ୟୁରୋପୀୟ ଦେଶସମୂହର କମ୍ୟୁନିଷ୍ଟ ପାର୍ଟିମାନଙ୍କର ଆଞ୍ଚଳିକ ବୈଠକମାନ ନିକଟରେ ବସିଥିଲା ଓ କୌଣସି ଏକ ଅଞ୍ଚଳରେ ସାମାଜିକ ସଂଗ୍ରାମର ସାଧାରଣ ସମସ୍ୟା-

ବଳୀ ସଂକ୍ରାନ୍ତରେ ସାମୂହିକ ବିଶ୍ଳେଷଣ ସବୁଠାରେ କରାଯାଇଥିଲା । ଜାତୀୟ ଓ ଆଞ୍ଚଳିକ ସମସ୍ୟାବଳୀ ଭିତରେ ରହିଥିବା ସଂପର୍କର ରୂପ ଓ ଆଧେୟ ଏବଂ ବିଶ୍ୱ ସଂପର୍କ ତଥା ଅନ୍ତର୍ଦ୍ୱନ୍ଦ୍ୱର ବ୍ୟବସ୍ଥା ଭିତରେ କୌଣସି ଏକ ବିଶେଷ ଅଞ୍ଚଳର ସ୍ଥାନ କଣ ହେବ ସେ ବିଷୟରେ ଯେଉଁ ବିଶ୍ଳେଷଣ ହୋଇଥିଲା ତାହା ବିଶେଷ ଲାଭଦାୟକ ହୋଇଛି । କେତେକ କମ୍ୟୁନିଷ୍ଟ ପାର୍ଟି ପ୍ରସ୍ତାବ କରିଛନ୍ତି ଯେ ନିୟମିତଭାବେ ଆନ୍ତର୍ଜାତିକ ବୈଠକ-ମାନ ହେବା ଉଚିତ ଏବଂ ଭାବବିନିମୟ ଓ ଆଦାନପ୍ରଦାନର ଏପରି ଆନ୍ତର୍ଜାତିକ ରୂପ ବାହାର କରାଯିବା ଉଚିତ ଯାହାକି ସଂହତି ଓ ସ୍ୱାଧୀନତା ମଧ୍ୟରେ ନମନୀୟ ମିଳନକୁ ନିଶ୍ଚିତ କରିବ ।

ଏହା ମନେ ରଖିବାକୁ ହେବ ଯେ କମ୍ୟୁନିଷ୍ଟମାନଙ୍କର ଆନ୍ତର୍ଜାତିକ ସଂହତି **ଏକ ଅବସ୍ଥା ନୁହେଁ ; ତାହା ଏକ ପ୍ରକ୍ରିୟା** । ଯହିଁରେ ଭିନ୍ନ ଭିନ୍ନ ଆଭିମୁଖ୍ୟ ଓ ମତଭେଦ ଦେଖା ଦେଇପାରେ (ଦେଖାଯାଉଛି ମଧ୍ୟ) । ହେଲେହେଁ, କମ୍ୟୁନିଷ୍ଟ-ମାନଙ୍କର ଆନ୍ତର୍ଜାତିକ ଐକ୍ୟ କ୍ଷେତ୍ରରେ ତାହା ପ୍ରତିବନ୍ଧକ ହେବା ଉଚିତ ନୁହେଁ, କାରଣ ଆଜି ଏହି ଐକ୍ୟ ବୈଚିତ୍ର୍ୟରେ ଐକ୍ୟ ଛଡ଼ା ଆଉ କିଛି ନୁହେଁ ।

କମ୍ୟୁନିଷ୍ଟ ପାର୍ଟିମାନଙ୍କ ମଧ୍ୟରେ ଯେ ସଂପୂର୍ଣ୍ଣ ମତୈକ୍ୟ ସର୍ବଦା ରହିଥାଏ, ଏକଥା କମ୍ୟୁନିଷ୍ଟମାନେ କେବେହେଲେ କହନ୍ତି ନାହିଁ । ଆମେ ଜାଣୁ ଯେ ସବୁ ବିଷୟରେ ମତାମତର ସମାନତା କଦାପି ରହି ନପାରେ । କେତେଗୁଡ଼ିଏ ପ୍ରଧାନ ନିଷ୍ପତ୍ତିମୂଳକ ଓ ଅନ୍ତିମ ଲକ୍ଷ୍ୟ କମ୍ୟୁନିଷ୍ଟମାନଙ୍କର ରହିଥାଏ ଯାହା ସେମାନଙ୍କୁ ଏକତାବଦ୍ଧ କରେ— ଯଥା, ଶାନ୍ତି ଓ ସମାଜବାଦ । ଏ ଲକ୍ଷ୍ୟଗୁଡ଼ିକ ପ୍ରତି ଆଭିମୁଖ୍ୟ ପୃଥକ ଓ ବିଭିନ୍ନ । ସେଇଭଳି ଏକତାର ମଧ୍ୟ ଏକରୂପତା ସହିତ, ବଡ଼ବଡ଼ିଆଙ୍କ ମାତବରୀ ସହିତ କୌଣସି ସମ୍ବନ୍ଧ ନାହିଁ । ଗୋଟିଏ ପାର୍ଟିର ବ୍ୟାପାରରେ ଅନ୍ୟ ଏକ ପାର୍ଟିର ହସ୍ତକ୍ଷେପ ଅଥବା ସତ୍ୟ ଉପରେ ଏକଚାଟିଆ କର୍ତ୍ତୃତ୍ୱ ହାସଲ ଲାଗି କୌଣସି ପାର୍ଟିର ଆକାଂକ୍ଷା ପୋଷଣର ସ୍ଥାନ ଏଠି ନାହିଁ । ଶ୍ରେଣୀ ସଂହତିରୁ ଏବଂ ସାଧାରଣ ଲକ୍ଷ୍ୟ ହାସଲ ପାଇଁ ସଂଗ୍ରାମରେ ଭ୍ରାତୃପ୍ରତିମ ପାର୍ଟିମାନଙ୍କର ସମାନାଧିକାରସଂପନ୍ନ ସହଯୋଗିତାରୁ ହିଁ କମ୍ୟୁନିଷ୍ଟ ଆନ୍ଦୋଳନ ତା'ର ଶକ୍ତି ଆହରଣ କରିଥାଏ, କେବଳ ସେଇଥିରୁ ହିଁ ଏହା କରିପାରେ ।

× × ×

ମାର୍କସ ଓ ଏଙ୍ଗେଲସଙ୍କ ଦ୍ୱାରା ରଚିତ **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର** ପ୍ରକାଶ ପାଇବା ପରେ ଇତିମଧ୍ୟରେ ଏକଶହ ତ୍ରିଶ ବର୍ଷ ଗତ ହୋଇ ଗଲାଣି । ଏହି

୧୪୦ ବର୍ଷ ଭିତରେ ଶ୍ରମଜୀବୀ ଜନତା ସବୁ କିସମର ଶୋଷଣ ଓ ନିର୍ଯ୍ୟାତନ ବିରୋଧରେ ସାମାଜିକ ଓ ଅଗଣିତ ଶ୍ରେଣୀ ସଂଗ୍ରାମ ଲଢ଼ିଛନ୍ତି । ଆମେ ପୂର୍ବେ କହିଛୁ ଯେ ଏଇ ବିଗତ ବର୍ଷମାନଙ୍କରେ ପୃଥିବୀରେ ଅନେକ ପରିବର୍ତ୍ତନ ହୋଇଛି : ଆନ୍ତର୍ଜାତିକ ଶ୍ରମିକଶ୍ରେଣୀର ସଂଗ୍ରାମର ଅବସ୍ଥା କଳ୍ପନାତୀତଭାବେ ବଦଳି ଯାଇଛି, ଆଉ ଏହାର ବୈପ୍ଲବିକ ତତ୍ତ୍ୱ ବହୁଳ ପରିମାଣରେ ସମୃଦ୍ଧ ହୋଇଛି । ମାତ୍ର ବର୍ତ୍ତମାନର ବୈପ୍ଲବିକ ଆନ୍ଦୋଳନ—କମ୍ୟୁନିଷ୍ଟ ଆନ୍ଦୋଳନରେ ଅଂଶଗ୍ରହଣକାରୀମାନେ ଏକଥା ଆଦୌ ଭୁଲିଯାଇ ନାହାନ୍ତି ଯେ **କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର**ରେ ପ୍ରଦତ୍ତ ବିଗ୍ରହଗୁଡ଼ିକ ହିଁ ହେଲା ସେମାନଙ୍କ କ୍ରିୟାକର୍ମର ମୂଳ ସୂତ୍ର ଓ ମୂଳ ଭିତ୍ତି ।